# ଅର୍ଘ୍ୟ ଅର୍ପଣ

ଅମ୍ବିକା ସ୍ୱାଇଁ

ପ୍ରକାଶକ :



ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ
ଭୁବନେଶ୍ୱର-୭୫୧୦୧୬

# ଅର୍ଘ୍ୟ ଅର୍ପଣ

*ରଚନା :*
**ଅମ୍ବିକା ସ୍ୱାଇଁ**
ଅନ୍ଧାରୁଆ, ଭୁବନେଶ୍ୱର
ଦୂରଭାଷ : ୯୭୭୭୫୯୯୬୯୫

*ପ୍ରକାଶକ :*
**ବସନ୍ତ ମାଝି**
ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ
ଏମ୍.ଆଇ.ଜି.(୧)୧୯/୨
ହାଉସିଂବୋର୍ଡ କଲୋନୀ, ଚନ୍ଦ୍ରଶେଖରପୁର
ଭୁବନେଶ୍ୱର-୭୫୧୦୧୬

*ପ୍ରଥମ ସଂସ୍କରଣ :*
ଜାନୁଆରୀ, ୨୦୧୯

*ମୁଦ୍ରଣ :*
**ଜଗନ୍ନାଥ ଗ୍ରାଫିକ୍ସ**
୩୯୩, ସହିଦ ନଗର, ଭୁବନେଶ୍ୱର
ଫୋନ୍-୯୪୩୭୧୧୯୯୧୧

ମୂଲ୍ୟ - ଟ. ୧୦୯/-

## ARGHAYA ARPANA

*Author :*
**Ambika Swain**
Andharua, Bhubaneswar
Mob : 9777599695
Emial :ambikaswain45934@gmail.com

*Publisher :*
**BASANTA MAJHI**
**Chandrasekharpur**
**Sahitya Sansad**
MIG-(1)19/2, Chandrasekharpur
H.B Colony, Bhubaneswar -16

1st Edition :
January, 2019

*Printing :*
**Jagannath Graphics**
393, Sahid Nagar,
Bhubaneswar
Ph. : 9437119911

Price :₹ 109/-





# ଉତ୍ସର୍ଗ

"ଆହେ ମୋ' ହୃଦୟର ପ୍ରଭୁ କାଳିଆ ଠାକୁର
ଘେନାକର କୋଟି କୋଟି ପ୍ରଣାମ ମୋହର,
ଏହି ମୋର ପ୍ରଥମ ଭକ୍ତିର 'ଅର୍ଘ୍ୟ ଅର୍ପଣ'
ତୁମରି ଚରଣାବିନ୍ଦରେ କଲି ସମର୍ପଣ ।।"

ମୋ ହୃଦୟର ପ୍ରଭୁ ଜଗନ୍ନାଥ ସ୍ୱାମୀ, ବିଘ୍ନ ବିନାଶକ ଶ୍ରୀ ଶ୍ରୀ ଗଣେଶ ଦେବ, ଜ୍ଞାନଦାତ୍ରୀ ମା'ଶାରଦା ସରସ୍ୱତୀ, ମୋର ଇଷ୍ଟଦେବ ସିଦ୍ଧେଶ୍ୱର ମହାପ୍ରଭୁ ଓ ସିଦ୍ଧ ଗୋରକ୍ଷନାଥ, ମୋର ସିଦ୍ଧ ସଦ୍‌ଗୁରୁ ସିଦ୍ଧସ୍ୱାମୀ ହରଦାସଙ୍କ ଆଶୀର୍ବାଦରୁ ମୁଁ ଏହି ସାରସ୍ୱତ ସାଧନାର ପ୍ରୟାସ କରୁଛି । ପ୍ରଭୁ ଆପଣମାନଙ୍କର ଅସୀମ କୃପାରୁ ସ୍ୱତଃ-ପ୍ରବୃତ୍ତ ଭାବେ ମୋ' ହୃଦୟକନ୍ଦରୁ ଝରି ଆସୁଥିବା ଭାବ, ଭାଷା ଓ ଭାବନାକୁ ଲେଖନୀ ମୁନରେ ଭକ୍ତି କବିତା ରୂପରେ ଆଙ୍କି ଦେଇଛି ।

ମୋର ଏହି ପ୍ରଥମ ପୁସ୍ତକ ଭକ୍ତି କବିତା ସଂକଳନ 'ଅର୍ଘ୍ୟ ଅର୍ପଣ' ଆପଣଙ୍କ ଚରଣରେ ସମର୍ପଣ କରୁଛି । ପ୍ରଭୁ ଆପଣଙ୍କର ଆଶୀର୍ବାଦ ରହିଲେ ଆଗକୁ ଏମିତି ଲେଖୁଥିବି । ଏଥିପାଇଁ ଆପଣଙ୍କ କାଣିଚାଏ କରୁଣା ମୋର କାମ୍ୟ ।

ଶରଣାଗତ
- ଅମ୍ବିକା ସ୍ୱାଇଁ



# ଅନ୍ତରରୁ...

ଓଡ଼ିଶାର କଟକ ଜିଲ୍ଲାର ଏକ ଛୋଟିଆ ଗାଁ, ବିଲ, ବଣଭରା ଗହୀର ମଝିରେ ମାତ୍ର ସାତୋଟି ଘର। ନାଁ ତା'ର ସେରପୁର। ମୋର ପରମପୂଜ୍ୟ ଦିବଂଗତ ପିତା ଶ୍ରୀଯୁକ୍ତ ବିଦ୍ୟାଧର ସ୍ୱାଇଁ ଓ ମାତା ଶ୍ରୀମତୀ ଶୈଳବାଳା ସ୍ୱାଇଁଙ୍କର ସନ୍ତାନ ରୂପେ ଜନ୍ମହୋଇ ମୁଁ ନିଜକୁ ଗର୍ବିତ ମନେ କରୁଛି।

କୈଶୋରରୁ ସହରର ପାରିପାର୍ଶ୍ୱିକ ଚାକଚକ୍ୟ ଜୀବନ ଶୈଳୀରେ ବାନ୍ଧିହୋଇ ସମୟ ବିତାଉଥିଲେ ମଧ୍ୟ ମୋ' ଗାଁର ତୃପ୍ତୀମୟ ପ୍ରୀତିକୁ ଭୁଲିନି, ମୋ ଜନ୍ମମାଟିର ବାସ୍ନା, ପାଣି, ପବନ ରୀତିନୀତି ପର୍ବପର୍ବାଣୀ ଚାଲିଚଳନି ପିଠାପଣା, ରଜଦୋଳି, କୁଆଁର ପୂନେଇଁ ଗୀତ, ପୁଚିଖେଳ, ତାସ୍ ଲୁଡୁପାଲି, ବୋହୂଚୋରୀ, କାଚଗୁଲି, ଗୋଡିଡିଆଁ, କାଗଜଡଙ୍ଗା ଓ ଓଳି ପାଣିରେ ଭାସି ଯାଉଥିବା ରହସ୍ୟମୟ ଫୋଟକାର କାହାଣୀ ଏବେ ବି ମନେ ପଡିଲେ ରୋମାଞ୍ଚିତ କରେ ଦେହ, ମନ। ଏବଂ ଆମ ଗାଁ ର ଇଷ୍ଟଦେବୀ ମା' ବୁଢ଼ିଜାଗୁଲାଇଙ୍କ ସନ୍ଧ୍ୟା ଆଳତୀର ଘଣ୍ଟଘଣ୍ଟାର ଶବ୍ଦର ଝଙ୍କାର ଓ ଠାକୁରାଣୀଙ୍କ ପାଖରେ ପ୍ରତିବର୍ଷ ଅଷ୍ଟମ ପ୍ରହରୀ ନାମ ସଂକୀର୍ତ୍ତନର ଢ଼ୋଲମୃଦଙ୍ଗର ତାଳେ ତାଳେ ହରେକୃଷ୍ଣ, ହରେରାମ ନାମର ମାହାତ୍ମ୍ୟ ଏବେ ବି କର୍ଣ୍ଣରେ ଗୁଞ୍ଜରିତ ହୁଏ। ଆମ ଆଭିଜାତ୍ୟ ପରମ୍ପରା ଗତ ଯୌଥପରିବାରର ଗହଳି, ଚହଳି ଭିତରେ ମୋ' ବାପା, ବୋଉ, ବଡ଼ବାପା, ବଡ଼ବୋଉ, ଦୁଇଦାଦା, ଖୁଡ଼ୀ ସମସ୍ତଙ୍କ ଅଜସ୍ର ସ୍ନେହ ଭଲପାଇବା ପାଇ ବଡ଼ ହୋଇଥିଲି, ଯାହା କି ଏତେ ଭଲ ପାଇବା ଯେ, ତାକୁ ଶବ୍ଦରେ ପ୍ରକାଶ କରିବାକୁ ମୋ ପାଖରେ ଭାଷା ନାହିଁ। ଆମେ ପରିବାରରେ ସବୁ ବଡ଼ ସାନ ଭାଇଭଉଣୀ ମିଶି ଏଗାର ଭଉଣୀ ଓ ସାତ ଭାଇ ସମସ୍ତଙ୍କ ସହ ଖୁବ୍ ଆନନ୍ଦରେ ହସିଖେଳି ପିଲାଦିନ କଟେଇଥିଲି, ସମସ୍ତେ ମୋତେ ଖୁବ୍ ଭଲ ପାଆନ୍ତି, ବିଶେଷକରି ମୋର ଅତି ପ୍ରୀୟ ମୋ ଜେଜେ ମା' ରାଣୀଦେବୀଙ୍କର ମୋ' ପ୍ରତି ଥିବା ସ୍ୱତନ୍ତ୍ର ଅନାବିଳ ପ୍ରେମ ସ୍ନେହ ଭଲପାଇବା ଯାହା କି ମୁଁ ଏବେ ବି ଅନେକ ସମୟରେ ସ୍ମୃତି ଚାରଣାକରେ। ସବୁ କଥା ମୋର ଚକ୍ଷୁ ପଇଳରୁ ଓ ହୃଦୟର ଗଭୀର କୋଣରୁ ସଜଳସ୍ମୃତି ହୋଇ ଚିକ୍ ଚିକ୍ କରି ଭାସିଆସେ...। ମୋ ଜେଜେ ବାପାଙ୍କୁ ତ ପିଲାଦିନୁ ଦେଖିନି କିନ୍ତୁ ମୋ' ଜେଜେ ମା'ଙ୍କର ଆଶୀର୍ବାଦ ସବୁବେଳେ ମୋ' ସାଥୀରେ ଅଛି ବୋଲି ଅନୁଭବ କରେ। ମୋତେ ଅସରନ୍ତି ଭଲପାଇବା ଓଜାଡୁଥିବା ମୋ ସମ୍ମାନୀୟ ଦାଦା ଶ୍ରୀଯୁକ୍ତ ଦୁର୍ଯ୍ୟୋଧନ ସ୍ୱାଇଁ ଓ ଖୁଡ଼ୀ ସରସ୍ୱତୀ ସ୍ୱାଇଁ ଏବଂ ମୋ' ଶାଶୂ ଶ୍ୱଶୁର ମୋ ପରିବାର ତଥା ଶାଶୂଘର ଓ ବାପଘରର ସଦସ୍ୟ ମୋତେ ଖୁବ୍ ଭଲପାଉଥିବା ସ୍ନେହ କରୁଥିବା ସମସ୍ତଙ୍କର ଶୁଭେଚ୍ଛା ଓ ଆଶୀର୍ବାଦରୁ ପିଲାଦିନରୁ ସାହିତ୍ୟ ପ୍ରତି ଥିବା ଅହେତୁକ ଅନୁରାଗ ଓ ପ୍ରଭୁଙ୍କ କରୁଣାରୁ ଆଜି ଲେଖନୀ ଧରିଛି। ପିଲାଦିନୁ ମୋ' ଆତ୍ମା ଭିତରେ ଥିବା ସାରସ୍ୱତ ନିଦ୍ରିତ ଭ୍ରୁଣଟି ଜାଗି ଉଠି କେତେବେଳେ ଚକ୍ଷୁମେଲି ଧୀରେ ଆତ୍ମ ପ୍ରକାଶ କଲା ତାହା ବି ମୁଁ ସଠିକ୍ ମନେ ପକାଇ ପାରୁନି।

ମୋ ଅନ୍ତରାତ୍ମାରୁ ଝରି ଆସୁଥିବା ଭାବ ଓ ଭାଷାକୁ ଅତି ସହଜ ସରଳ ଢଙ୍ଗରେ ଶବ୍ଦ ସଜିତ କରି ଲେଖନୀ ମୁନରେ ସାଧା କାଗଜରେ ଆଙ୍କି ଦେଇଛି। କାହା ମନକୁ କେତେ ଛୁଇଁବ ଜାଣେ ନାହିଁ। ତଥାପି ମୋ' ଲେଖନୀରୁ ଝରିଆସିଥିବା ବହୁ ସଂଖ୍ୟାରେ କବିତା ଗଳ୍ପ, ପ୍ରବନ୍ଧ ଓ ଶିଶୁ କବିତା ମାନ ବହୁ ପତ୍ରପତ୍ରିକାରେ ଓଡ଼ିଶା ତଥା ଓଡ଼ିଶା ବାହାରେ ପ୍ରକାଶିତ ହୋଇ ସାରିଛି ଓ ଏହା ଜାରି ମଧ୍ୟ ରହିଛି। ପାଠକୀୟ ଆଦୃତି ମିଳୁଛି ବୋଲି ଅନୁଭବ କରେ କାରଣ- ବହୁ ପତ୍ରପତ୍ରିକାରୁ ଫୋନ କଲ୍ ଆସେ ଲେଖା ଦେବାପାଇଁ, ଅନେକ ପାଠକ ଓ ପ୍ରସଶଂକ ମାନେ ଓଡ଼ିଶା ତଥା ଭାରତ ବାହାରୁ ମଧ୍ୟ ଫୋନ୍ କରି ଶୁଭେଚ୍ଛା ଜଣାନ୍ତି ଓ ପ୍ରଶଂସା ମଧ୍ୟ କରନ୍ତି। ଏମିତିକି ଏ ସ୍ମାର୍ଟଫୋନ୍ ଯୁଗରେ ବି ହାତଲେଖା ଚିଠିଟିଏ ଦେବାକୁ ପାଠକ ଭୁଲି ନାହାନ୍ତି। ଫୋନ୍ କଲ୍‌ଟି ହେଉ ବା ଚିଠିଟି ହେଉ ସେଥିରେ ଯେଉଁ ଆବେଗମୟ ପ୍ରଶଂସାର ଭାଷା ତାହା ମୋ' ଲେଖକୀୟ ସାର୍ଥକତା।

ମୋ ଲେଖନୀକୁ ଆଗକୁ ନେବାକୁ ମୋ ସ୍ୱାମୀ ଶ୍ରୀଯୁକ୍ତ ଅରୁଣ କୁମାର ସାଇଁଙ୍କର ନିରବ ସହଯୋଗ ଓ ପିଲାମାନଙ୍କର ଖୁବ୍ ଶ୍ରଦ୍ଧା ବେଶ୍ ଅଭିନନ୍ଦନୀୟ। ମୋର ଅତିପ୍ରିୟ ଦୁଇ ଭାଇ (ପ୍ରଶାସନିକ ଅଧିକାରୀ) ସମ୍ମାନନୀୟ ବଡ଼ଭାଇ ମହେଶ୍ୱର ସାଇଁ (O.F.S) ଓ ସ୍ନେହର ସାନଭାଇ କିଶୋର ଚନ୍ଦ୍ର ସାଇଁ (O.A.S)ଙ୍କର ସାହାଯ୍ୟ, ସହାନୁଭୂତି ମୋତେ ଆଉ ଦୁଇପାଦ ଆଗକୁ ଯିବାକୁ ପ୍ରେରଣା ଯୋଗାଉଛି ଓ ଉତ୍ସାହିତ କରୁଛି। ଆଜିର ଏହି ଶୁଭ ଅବସରରେ ମୋ ଦିବଂଗତ ଶାଶୂ କମଳାଦେବୀ ଓ ଶ୍ୱଶୂରଙ୍କର ଆଶୀର୍ବାଦ ଅନୁଭବ କରୁଛି। ଆଜି ମୋ ଶ୍ୱଶୂର ଶ୍ରୀଯୁକ୍ତ କପିଳ ଚରଣ ସାଇଁ ଥିଲେ ବହୁତ ଖୁସି ହୋଇଥାଆନ୍ତେ, ସେ ଥିଲେ ଜଣେ ଆଧ୍ୟାତ୍ମିକ ଗୁରୁ, ସରଳ, ମିଷ୍ଟଭାଷୀ ଅମାୟିକ ବ୍ୟକ୍ତିତ୍ୱ ଓ ପ୍ରଭୁଙ୍କର ପରମଭକ୍ତ । ତାଙ୍କର ଭଗବତ୍ ପ୍ରେମ ଭାଷା ମୋତେ ଖୁବ୍ ଅନୁପ୍ରାଣିତ କରେ। ପିଲାଦିନୁ ମୋ ବାପାମା'ଙ୍କର ଧାର୍ମିକ ଚେତନା ଓ ଚିନ୍ତାଧାରାରେ ମୁଁ ଖୁବ୍ ପ୍ରଭାବିତ ହୋଇଛି। ଯାହା ବି ହେଉ ସମସ୍ତଙ୍କର ଅଜସ୍ର ଭଲପାଇବା ସ୍ନେହ ସହାନୁଭୂତି, ପ୍ରଭୁଙ୍କର ଅପାରକରୁଣାରୁ ଆଜି ମୋର ଅନେକ ଦିନୁ ଅଧାରହିଯାଇଥିବା ପ୍ରସ୍ତୁତିପର୍ବ ପୂର୍ଣ୍ଣରୂପ ନେବାକୁ ଯାଉଛି। ମୋର ହୃଦୟର ପ୍ରଭୁ ଜଗନ୍ନାଥ ମହାପ୍ରଭୁଙ୍କର ପାଦପଦ୍ମରେ ମୋର ଆତ୍ମାରୁ ନିର୍ଗତ ଏହି ସରଳ ଭାବପୂର୍ଣ୍ଣ ଭକ୍ତି କବିତା ପୁସ୍ତକ "ଅର୍ଘ୍ୟ ଅର୍ପଣ"କୁ ଅର୍ପଣ କରୁଛି ଓ ପ୍ରଭୁଙ୍କର ଆଶିଷ କାମନା କରୁଛି। ମୋର ଏହି ସରଳ ଶବ୍ଦ ସଜ୍ଜିତ ମାଳାଟିରେ କିଛି ତ୍ରୁଟିବିଚ୍ୟୁତି ଥିଲେ କ୍ଷମା ଚାହୁଁଛି। ମୋର ଦ୍ୱିତୀୟ କାବ୍ୟ ସଂକଳନ ଅପରାହ୍ନର ସୂର୍ଯ୍ୟ ଏକତ୍ର ଉନ୍ମୋଚନ ଅପେକ୍ଷାରେ ରହିଛି। ଏହାପରେ ଆଉ ତିନୋଟି ପାଣ୍ଡୁଲିପି ପ୍ରସ୍ତୁତିରେ ଅଛି 'ଚିନ୍ତାଚେତନାର ମାଳାଟିଏ', ଶିଶୁ କବିତା ସଂକଳନ 'ମୁଁ ଭଲପିଲା ହେବି', କାବ୍ୟଗ୍ରନ୍ଥ 'ମୁଁ ଦ୍ରୌପଦୀ କହୁଛି'; ତାହା ମଧ୍ୟ ଖୁବ୍ ଶୀଘ୍ର ଆପଣମାନଙ୍କୁ ଭେଟି ଦେବି, ଏହାକୁ ଆଦରରେ ତୋଳିନେବେ ବୋଲି ଆଶା ଓ ବିଶ୍ୱାସ ମଧ୍ୟ ରହିଛି।

ପରିଶେଷରେ ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦର ପ୍ରତିଷ୍ଠାତା ତଥା ସଂପାଦକ କବି ବସନ୍ତ ମାଝି ଓ ଜଗନ୍ନାଥ ଗ୍ରାଫିକ୍ସର କର୍ମକର୍ତ୍ତା ଶ୍ରୀଯୁକ୍ତ ଅନନ୍ତ ରଥ ଓ କର୍ମଚାରୀ ବିଶେଷ କରି ମୋ' ସ୍ନେହର ମମତା ଭଉଣୀଙ୍କର ଶ୍ରଦ୍ଧାର ଶ୍ରମଦାନ ପାଖରେ ମୁଁ କୃତଜ୍ଞ। ସମସ୍ତଙ୍କୁ ମୋର ହୃଦୟର ଗଭୀର କୋଣରୁ ଅଶେଷ ଅଶେଷ ଧନ୍ୟବାଦ ଜ୍ଞାପନ କରୁଛି।

"ଓଁ ଶ୍ରୀ ଜୟ ଜଗନ୍ନାଥ"

- ଅମ୍ବିକା (ଅମି)





# ଅଭିମତ

ମୁଦ୍ରଣ ପାଇଁ ପ୍ରସ୍ତୁତ, ଶ୍ରୀମତୀ ଅମ୍ବିକା ସ୍ୱାଇଁଙ୍କ ରଚିତ "ଅର୍ଘ୍ୟ ଅର୍ପଣ" ଭକ୍ତି କବିତା ସଂକଳନଟି ପଢ଼ିଲି। ସେଥିରେ ଅନ୍ୟାନ୍ୟ ଦେବାଦେବୀଙ୍କର ସ୍ତୁତି ସ୍ଥାନିତ ହୋଇଥିଲେ ସୁଦ୍ଧା, ମୁଖ୍ୟତଃ ପୁସ୍ତକଟି ଶ୍ରୀଜଗନ୍ନାଥଙ୍କ ପାଇଁ ଉଦ୍ଦିଷ୍ଟ ଭଜନାବଳୀରେ ସମୃଦ୍ଧ, ଜଣେ ସମର୍ପିତ ଭକ୍ତଭାବରେ ନିଜ ଆତ୍ମାରୁ ଉଦ୍‌ଭାସିତ ଭାବକୁ ସେ ସରଳ ଏବଂ ସୁବୋଧ୍ୟ ଭାଷାରେ ସଜେଇ ପ୍ରକାଶ କରିବାର ପ୍ରଚେଷ୍ଟା କରିଛନ୍ତି। ସେଥିପାଇଁ ସେ କିଛି କବିତାରେ ଯତିପାତକୁ ମଧ୍ୟ ଉପେକ୍ଷା କରି ଦେଇଛନ୍ତି। ଅବଶ୍ୟ ଏହା ତ୍ରୁଟି ନୁହେଁ- କିନ୍ତୁ ସେ କବିତାକୁ ସ୍ୱରରେ ସଜାଇବା ବେଳେ ସ୍ୱରକାରଙ୍କୁ ଧ୍ୟାନ ଦେବାକୁ ପଡିବ, କିନ୍ତୁ ଜଣେ କୁଶଳୀ ସ୍ୱରକାର ତାକୁ ସ୍ୱରାଳଙ୍କାରରେ ସଜାଇ ପାରିବେ ବୋଲି ମୋର ବିଶ୍ୱାସ।

ଓଡ଼ିଆ ଭାଷାରେ ଅଗଣିତ ଶବ୍ଦ ଭଣ୍ଡାର ଥିଲେ ମଧ୍ୟ ପ୍ରଚଳନରେ ବହୁ ସୀମିତ ଶବ୍ଦ ରହିଅଛି, ସେଥିପାଇଁ ଜଣେ ଗୀତିକାର ସମସ୍ତଙ୍କ ମନକୁ ମାନିଲାଭଳି ଗୀତଟିଏ ଲେଖିବାରେ ଅନେକ ବାଧକ ସୃଷ୍ଟି ହୁଏ। ତଥାପି ଶ୍ରୀମତୀ ସ୍ୱାଇଁ ତାଙ୍କ ରଚନାରେ କିଛି କିଛି ଅପ୍ରଚଳିତ ଶବ୍ଦ ବ୍ୟବହାର କରିବାକୁ ସାହାସ କରିଛନ୍ତି। ଓଡ଼ିଆ ସାହିତ୍ୟରେ ଲୁଚିଯାଉଥିବା ଶବ୍ଦମାନଙ୍କୁ ବ୍ୟବହାରରେ ନଆଣିଲେ କ୍ରମଶଃ ଓଡ଼ିଆ ଭାଷା ଏବଂ ସାହିତ୍ୟ ସଂକୁଚିତ ହୋଇଯିବ। ସେଥିପାଇଁ ଶ୍ରୀମତୀ ସ୍ୱାଇଁଙ୍କ ପ୍ରଚେଷ୍ଟାକୁ ମୁଁ ଧନ୍ୟବାଦ ଜଣାଉଛି।

ମହାପ୍ରଭୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦିଷ୍ଟରେ ଭଜନଟିଏ ଲେଖିବା ବହୁ କଷ୍ଟସାଧ କାର୍ଯ୍ୟ। ତାଙ୍କ ସ୍ଥିତି ଓ ବ୍ୟାପ୍ତି, ପୃଥିବୀର ବହୁ ଯୋଗୀ, ଜ୍ଞାନୀ, ସାଧକମାନଙ୍କୁ ଏ ପର୍ଯ୍ୟନ୍ତ ଅଗୋଚର। ତେଣୁ ସନ୍ଥକବି ଅତିବଡ଼ି ଜଗନ୍ନାଥ ଦାସ ଶ୍ରୀଜଗନ୍ନାଥଙ୍କ ପରିଚିତ ନଅଟି ଅକ୍ଷରରେ ଭାଗବତରେ ପ୍ରକାଶକରି ବିଶ୍ୱ ସନ୍ଥସମାଜକୁ ଚମତ୍କୃତ କରି ଦେଇଛନ୍ତି। ଭାଗବତରେ ଲେଖାଅଛି "ନିର୍ଗୁଣଆତ୍ମା ଗୁଣବନ୍ତ, ତୋର ମହିମା ଜଗନ୍ନାଥ (ଗୋପିନାଥ)"।



ତେଣୁ କୌଣସି ଗୁଣର ବିଭୁତିରେ ମହାପ୍ରଭୁଙ୍କୁ ପ୍ରକାଶ କରାଇବା ଅସମ୍ଭବ ହୋଇଥିଲେ ମଧ୍ୟ ଏ ସୃଷ୍ଟିରେ ଯେତେଗୁଣ ଅଛି, ସେ ସମସ୍ତ ଗୁଣ ତାଙ୍କରି ବିଭୁତିରେ ଠୁଳ ହୋଇ ରହିଛି। ଏହି ତତ୍ତ୍ୱ ବହୁ ସିଦ୍ଧପୁରୁଷ, ସାଧୁସନ୍ଥଙ୍କ ରଚନାରେ ଅବୋଧ ହୋଇ ରହିଛି। ସେହି ମର୍ମରେ ଶ୍ରୀମତୀ ଅମ୍ବିକା ସ୍ୱାଇଁ ମଧ୍ୟ ସନ୍ତୁଳିତ ହୋଇ ରହିଥିବେ। ତେଣୁ ମୁଁ ଜଗନ୍ନାଥଙ୍କୁ ଜଣାଉଛି ତାଙ୍କୁ ଶକ୍ତି ଏବଂ ପ୍ରେରଣା ଦିଅନ୍ତୁ, ସେ ମହାପ୍ରଭୁଙ୍କ ଏ ମାୟାକୁ ଭେଦ କରିବାରେ ବ୍ୟସ୍ତ ରୁହନ୍ତୁ।

**ଶ୍ରୀଯୁକ୍ତ ପ୍ରଫୁଲ୍ଲ କର**
ସଂଗୀତକାର ଓ କଣ୍ଠଶିଳ୍ପୀ
୬୦, ସତ୍ୟନଗର, ଭୁବନେଶ୍ୱର
ଫୋନ: ୨୫୭୫୭୮୮



# ସୂଚୀପତ୍ର





# ବିଘ୍ନ ବିନାଶକ

ବିଘ୍ନବିନାଶକ ଗଉରୀ ନନ୍ଦନ
ବିଦ୍ୟାଦାତା ଶ୍ରୀ ଗଣେଶ
ଲଡୁରେ ତୁମର ଭାରି ତ ଶରଧା
ଖାଇକର ମନ ତୋଷ //୧//

ତୁମ କୃପାବଳେ ବୁଦ୍ଧି ବିଦ୍ୟା ମିଳେ
ମୁର୍ଖ ହୁଏ ଜ୍ଞାନଧାରୀ
ଅଗ୍ରପୂଜ୍ୟ ତୁମେ ଶ୍ରୀ ଶ୍ରୀ ଗଜାନନ
ବ୍ରହ୍ମାଣ୍ଡ ଭ୍ରମଣ କାରୀ //୨//

ତୁମ ଚରଣରେ ମାଗୁଣି କରୁଛି
ବୁଦ୍ଧି, ବିଦ୍ୟା ଦିଅ ଭରି
ତୁମରି ଆଶିଷ ମିଳିଗଲେ ମୋତେ
ବିଘ୍ନ ଯିବ ଅପସରି //୩//

ଏମିତି ଲେଖୁଛି ଲେଖୁଥିବି ମୁହିଁ
ତୁମରି ଆଶିଷ ପାଇ
ମୋର ସାଥେ ଥାଇ ଲେଖନୀକୁ ମୋର
ଆଗକୁ ନିଅ ଚଳାଇ //୪//



# ଓଁ ମା' ସରସ୍ୱତୀ

କଲ୍ୟାଣମୟୀ ମା' ବାଗ୍‌ଦେବୀ
ଜ୍ଞାନଦାତ୍ରୀ,ବିଦ୍ୟାଦାତ୍ରୀ,ମା'ସରସ୍ୱତୀ
ଶ୍ୱେତବସ୍ତ୍ର ପରିହୀତା, ସୁଶୋଭିତା
ହଂସ ପଦ୍ମ ବାହିନୀ ବୀଣା ଧାରିଣୀ ॥ ୧॥

ଯା' କଣ୍ଠେ ବିଦ୍ୟମାନ ହୁଅ ତୁମେ
ଭରିଦିଅ ସହସ୍ର ଅମୃତର ବାଣୀ
ଜ୍ଞାନ, ବୁଦ୍ଧି, ବାକ୍ ଚତୁରୀ କରୁଣାରେ
ସେ ହୁଏ ଅଜସ୍ର ଜ୍ଞାନର ଅଧିକାରୀ ॥ ୨॥

ତୁମପାଶେ କରୁଛି ମାଆ ଏ ଅଧମ ଅଳି
ସଦ୍ ବୁଦ୍ଧି ଦିଅ ମୋ ହୃଦୟରେ ଭରି
ତୁମ ଆଶୀର୍ବାଦରେ ଲେଖନୀ ମୁନ ମୋର
ସଦା ଚାଲୁଥାଉ ଆଗକୁ ଏହିପରି ॥୩॥



# ହେ ପରଂବ୍ରହ୍ମ ଈଶ୍ୱର

ହେ'ପରଂବ୍ରହ୍ମ ଈଶ୍ୱର ବିଭୁ ଅଣାକାର
ବ୍ରହ୍ମା, ବିଷ୍ଣୁ, ମହେଶ୍ୱର
ଅନ୍ଧାରର ଜ୍ୟୋତି ତୁମେ ଆଲୋକର ପଥ ତୁମେ
ଅସରନ୍ତି ଜ୍ଞାନର ଭଣ୍ଡାର ॥୧॥

ତୁମ ବିନା ଏ ସଂସାର ନିର୍ବିକାର ନିରାକାର
ନାହିଁ ସ୍ଥିତି ପରିସ୍ଥିତି ତା'ର
ପରମ ଆରାଧ୍ୟ ତୁମେ ଜ୍ଞାନର ଅମୃତ ଝର
ତୁମ ବିନା ନୁହେଁ ଏ ସୃଷ୍ଟି ସାକାର ॥୨॥



# ଜୟ ଜଗନ୍ନାଥ

ଲୀଳାମୟ ପ୍ରଭୁ ତୁମେ ଦାରୁ ବ୍ରହ୍ମ
କୋଟି ବ୍ରହ୍ମାଣ୍ଡର କଳା ଠାକୁର ।
ସୌମ୍ୟକାନ୍ତି ଧାରୀ ମଦନ ମୋହନ
ଚକାଡୋଳା ତୁମେ ପଦ୍ମ ଲୋଚନ ।
ସର୍ବମୟ କର୍ତ୍ତା ଆଦି ଅନନ୍ତ
ମହାବାହୁ ତୁମେ ଶ୍ରୀ ଜଗନ୍ନାଥ ।
ନୀଳା ଚଳିଆ ଚକା ଡୋଳିଆ
ସଂସାରର କର୍ତ୍ତା ସର୍ବ ନିୟନ୍ତା ।
ତୁମରି ଚରଣେ ଅଧମ ଅର୍ପିତ
କ୍ଷମାକର ବାରେ ଜଗତ ନାଥ ।



# ଜୀବନ ମୋ' ହେବ ଧନ୍ୟ

ପ୍ରଭୁ ତୁମ ପାଶେ ପଶିଲି ଶରଣ
ଧରି କଲମ କାଗଜ
ମନର ଭାବକୁ କରିବି ପ୍ରକାଶ
ଶବ୍ଦକୁ କରିଣ ସଜ ॥୧॥

ଦିଅ ମୋତେ ଶକ୍ତି ଦିଅ ମୋତେ ଭକ୍ତି
ଲେଖିବି ସଂସାର ଗାଥା
କେତେ ଭରିଅଛି ସଂସାରର ରୀତି
ସବୁ ମୋ ଅବୁଝା କଥା ॥୨॥

ତୁମରି ଆଶିଷ ଝରିଲେ ମୋ' ମାଥେ
ଲତା ପରି ଆଗେଇବି
କୁନି ଫୁଲଟିଏ ସେଥିରେ ଫୁଟାଇ
ତୁମ ପାଦେ ସମର୍ପିବି ॥୩॥

ଫୁଲରୁ ଫଳଟି ଅଙ୍କୁରିତ ହୋଇ
କ୍ରମେ କ୍ରମେ ବଡ ହେବ
ପାଚି ଯେତେବେଳେ ବାସି ମହକିବ
ଘରିଆଡେ ପ୍ରକଟିବ ॥୪॥

ହୃଦୟର କଥା ଅନୁଭବ ବାର୍ତ୍ତା
ସମାଜକୁ ବଖାଣିବି
ଜଣିଏ କେହି ତ ଉପକୃତ ହେଲେ
ଜୀବନ ଧନ୍ୟ ମଣିବି ॥୫॥

# ମୋ ହୃଦୟର ପୂଜା

ହୃଦୟ ପ୍ରଭୁ ମୋର ମୁଁ ଅଟେ ଯାଯାବର
ନାହିଁ ମୋ ଠାକୁର ଘର
ତୁମକୁ ରଖିଛି ହୃଦୟେ ସାଇତି
ପୂଜୁଛି ମୁଁ ନିରନ୍ତର ।।୧।।

ଲୋତକରେ ତୁମ ପାଦ ଧୋଇ ଦେବି
ଭକ୍ତିର ଚନ୍ଦନ ଲେପି
ମନର କୋମଳ ପୁଷ୍ପ ଅର୍ଘ୍ୟ ନେଇ
ପାଦ ପଦ୍ମେ ଦେବି ଅର୍ପି ।।୨।।

ହରଷେ ଗ୍ରହଣ କରିବ ଠାକୁର
କରିବନି ମୋତେ ପର
ମୋ'ସୁଧା ନୈବେଦ୍ୟ ଲୋଡା ହେଉ ତୁମ
ଏତିକି କାମନା ମୋର ।।୩।।

ଭକ୍ତି ଅର୍ଘ୍ୟ ଦେଇ ପୂଜା ମୁଁ କରୁଛି
ସାଦରେ ଗ୍ରହଣ କରିବ
ସନ୍ତାନଙ୍କୁ ତୁମ ବାହୁ ତଳେ ରଖି
ଟିକିଏ ଆଶିଷ ଦେବ ।।୪।।

ମୋର ଠାରେ ଥିବା ସବୁ ଦୁର୍ଗୁଣଙ୍କୁ
ସଳିତା କରି ଜାଳିବି
ଦୀପର ଆଲୋକ ବର୍ତ୍ତିକା ସାଜିଣ
ଜୀବନ ପଥେ ଲଢ଼ିବି ।।୫।।



# ଯାହା ତ ଦେଖୁଛି ....

ଯାହାତ ଦେଖୁଛି ସବୁତ ତୁମରି
କି ଦେଇ ପୂଜିବି ତୁମକୁ
ଭକ୍ତି ଅର୍ଘ୍ୟ ଦେଇ ପୂଜା ମୁଁ କରୁଛି
ଆଦରିଣ ନେବ ତାକୁ //୧//

ତୁମ ପଦ୍ମପାଦେ ଶରଣ ପଶୁଛି
ମାଗୁଛି ତୁମରି ଆଶିଷ
ତୁମରି କରୁଣା ପାଇ ଗଲେ ପ୍ରଭୁ
ଜୀବନ ହୋଇବ ସରସ //୨//

ଲୋଡ଼ା ନାହିଁ ମୋର ଧନ ଓ ରତନ
ଟଙ୍କା,ସୁନା,ଅଳଙ୍କାର
କେବଳ ଲୋଡ଼ା ମୋ ସିନ୍ଧୁରୁ ବିନ୍ଦୁଏ
ମାତ୍ର କରୁଣା ତୁମର //୩//

ଅମ୍ବିକା ଡାକୁଛି ହୃଦୟେ ତୁମକୁ
ଶୁଣ ପ୍ରଭୁ ଚକାଡୋଳା
ତୁମରି ଆଶିଷ ପାଇଗଲେ ମୁହିଁ
ସଂସାରୁ ତରିବି ଭଲା //୪//



# ଅଜ୍ଞାନ ସନ୍ତାନ ତୁମ

ଅଜ୍ଞାନ ଅଧମ ସନ୍ତାନ ମୁଁ ତୁମ
ଜାଣେ ନାହିଁ ଭଲ ମନ୍ଦ
ଅଳି ଅଝଟରେ ଡାକୁଛି ତୁମକୁ
ଜୀବନ ଜଞ୍ଜାଳ ଯୁଦ୍ଧ ।।୧।।

ଯେଉଁ ପଥେ ତୁମେ ନେଇଯିବ ପ୍ରଭୁ
ଆଦରିବି ସେହି ପଥ
ବିପଦୁ,ଆପଦୁ ଉଦ୍ଧରିଣ ମୋତେ
ଧରି ନେବ ମୋର ହାତ ।।୨।।

ହୃଦୟରେ ମୋର ବିଶ୍ୱାସ ରହିଛି
ନେବ ମୋତେ ସୁପଥରେ
କଉଣସି ଭୁଲ୍ କରିବାକୁ ମୋତେ
ଦେବ ନାହିଁ ଜୀବନରେ ।।୩।।

ଅଧମ ସନ୍ତାନ ଆଶିଷ ମାଗୁଛି
ତୁମରି ଚରଣ ତଳେ
କୁଣ୍ଠା କରିବନି ଏତିକି ମାଗୁଣି
ଭଣ୍ଡାରୁ ଦେବାକୁ ତିଳେ ।।୪।।

**ଭାଗ-୨**

ଆହେ ଦୀନବନ୍ଧୁ ଦୀନ ଦୁଃଖ ହାରି
ତୁମ ପାଶେ ଅଧମ କରୁଛି ଅଳି
କରୁଣା ବରଷା ଢ଼ାଳି ଦିଅ ପ୍ରଭୁ
ସଂସାରର ଦୁଃଖ ଯାଉ ଟଳି ।।୫।।

ଦୁର୍ଜ୍ଜନ ମାନଙ୍କୁ ବାଟ ତ କଢ଼ାଇ
ସୁ ପଥରେ ନିଅ ଗୋସାଇଁ
ସଂସାରକୁ କର ସ୍ୱଚ୍ଛ ନିରିମଳ
ସୁଜନଙ୍କୁ ଆଶିଷ ଦେଇ ।।୬।।



# ସଂକଳ୍ପ

ପ୍ରଭୁଙ୍କ ଆଶିଷେ ଧରାରେ ମୋ'ଜନ୍ମ
ନିରିମାଖି ଝିଅଟିଏ
କୋମଳ ହୃଦୟେ ସ୍ନେହର ପରଶ
ସଦା ବାଣ୍ଟି ଚାଲିଥାଏ ।।୧।।

ଜୀବନରେ ଆସୁ ଯେତେ ଝଡଝଞ୍ଜା
ପାଷାଣ ହୋଇ ମୁଁ ସହେ
ଭାଙ୍ଗି ପଡିବିନି ରହିବି ଅଟଳ
ଏ ଜୀବନ ଥିବାଯାଏ ।।୨।।

ଦୟା,କ୍ଷମା,ସ୍ନେହ ପ୍ରେମ ଓ କରୁଣା
ଜୀବନରେ ମୋର ବ୍ରତ
ଏହି ପଥରେ ମୁଁ ଚାଲିବି ନିଇତି
କରିଛି ଦୃଢ଼ ସଂକଳ୍ପ ।।୩।।

ସଂକଳ୍ପକୁ ମୋର ପୁରା କରିବାକୁ
ଦିଅ ପ୍ରଭୁ ଶକ୍ତି ସାମର୍ଥ୍ୟ
ସମାଜର ସେବା କରିବା ପାଇଁ କି
ହୋଇଯାଏ ମୁଁ ସମର୍ଥ ।।୪।।



# ଅନନ୍ତ ଈଶ୍ୱର

ପ୍ରଭୁ ଦୟାମୟ ଅନନ୍ତ ଈଶ୍ୱର
ତବପାଦେ କୋଟି ଜୁହାର
ଜୀବନରେ ମୋର ଅମା ଅନ୍ଧାରକୁ
କରିଦିଅ ତୁମେ ଦୂର ।। ୧ ।।

ଆଲୋକର ଜ୍ୟୋତି ଜାଳିଦେଇ ପ୍ରଭୁ
ସୁ ପଥରେ ନେଇ ଚାଲ
ହାତଧରି ବାଟ ଚଲେଇଲେ ମୋର
ଅବାଟରୁ ହେବି ଦୂର ।। ୨ ।।

ତୁମ ଅଦୃଶ୍ୟର ହାତସଦା ଥାଉ
ମସ୍ତକ ଉପରେ ମୋର
ତୁମ ଆଶୀର୍ବାଦେ କରିବି ମୁଁ ସେବା
ଦୀନ ଦୁଃଖୀ ଜନଙ୍କର ।।୩।।

✦✦✦

# ଫୁଲଟିଏ ମୋତେ....

ଫୁଲଟିଏ ମୋତେ କରିଦିଅ ପ୍ରଭୁ
ତୁମ ପୂଜାରେ ମୁଁ ଲାଗିବି
ଫୁଲପରି ମୋର କୋମଳ ହୃଦୟେ
ସମସ୍ତଙ୍କ ମନ ଜିଣିବି ।।୧।।

ଈର୍ଷା, ଦ୍ୱେଷ, କ୍ରୋଧ ମୋର ହୃଦୟରୁ
ନିଅ ପ୍ରଭୁ ତୁମେ ହରି
ଦୁଃଖି, ରଙ୍କି ଜନ ସେବା କରିବାକୁ
ଶକ୍ତି ସାମର୍ଥ୍ୟ ଦିଅ ଭରି ।।୨।।

ଫୁଲପରି ମୋର ବାସର ମହକ
ଚରିଆଡେ ଯାଉ ମହକି
ଜଗତ ଜନର ସେବା କରି କରି
ତନୁ ମୋ ନ ଯାଉ ଥକି ।।୩।।

ବଣମଲ୍ଲୀ ପରି ଫୁଲର ମହକ
ଜାଣିବେନି ଯଦି କେହି
ତଥାପି ମନରେ ଦୁଃଖ କରିବିନି
ସବୁତ ତୁମରି ପାଇଁ ।।୪।।



# ଝରୁ ଅମୃତ ଝର

ହେ ! ଜଗତ ଆତ୍ମା ତୁମେ ପରମାତ୍ମା
ନାହିଁ ତୁମ ଆଦି ଅନ୍ତ
ତୁମେ ରକ୍ଷାକର୍ତ୍ତା ସରବ ନିୟନ୍ତା
ତୁମ ଚରଣେ ଆଶ୍ରିତ ।
ଦିବସ ରଜନୀ ଜୟକାର ଧ୍ୱନି
କୋଟି କଣ୍ଠେ ଗୁଂଜରିତ ।
ସକଳ ସାଧନା ତୁମରି ଚରଣେ
କରୁଛି ମୁଁ ସମର୍ପିତ
ଅପାର କରୁଣା ଅମୃତର ଝର
ଝରୁଥାଉ ଅହର୍ନିଶି ।
ହୃଦୟ କନ୍ଦରେ ରଖିଛି ସାଇତି
ସଂସାର ନାବରେ ବସି ।
ଦୁର୍ଗମ ପଥର ଟଳମଳ ନାବ
କିପରି ହୋଇବି ପାରି
ହାତ ଧରି ମୋତେ ପାରି କରିନେବ
ଆହେ ଅନନ୍ତ ବିହାରୀ ।
ଘଡ଼ିସନ୍ଧିବେଳେ ସଂସାର ଯାତନା
ସବୁତ ପାରୁଛ ଜାଣି
ନୀରବ ନିଶ୍ଚଳ ଅଟଳ ରହିକି
ଶୁଣାଅ ତୁମର ବାଣୀ
ତଥାପି ତୁମର ଏହି ଲୀଳା ଖେଳା
ବୁଝିବାକୁ ଅଛି ବାକି
ପଥ ଲମ୍ବିଅଛି କେତେ ବହୁ ଦୂର
ଜନେ କି ପାରୁଛ ଚଖି ।



# ଆହେ ଦୟାମୟ....

ଆହେ ଦୟାମୟ ଦୟା ସାଗର
ଦୀନ ଦୁଃଖୀ ଜନ ଗୁହାରି ହର,
ଯିଏ ଯେପରି ଭାବେ ଡାକେ ତୁମକୁ
ଦୁଃଖ ନେଇ ସୁଖ ଦିଅ ଦୁଃଖୀ ଜନଙ୍କୁ //୧//

ତୁମେ ପାଶେ ନାହିଁ ଅନ୍ତର ପାନ୍ତର
ସମସ୍ତଙ୍କୁ ଦେଖ ତୁମେ ସମାନ ଭାବର,
ଦୁଃଖ, ସୁଖ ଭଲମନ୍ଦ ସବୁରି ରହସ୍ୟ
କର୍ମ ଅନୁସାରେ ଫଳ ପାଉଛି ମଣିଷ //୨//

ଅଜଣା ନାହିଁ ତୁମକୁ ଏ ସଂସାରରେ
ସବୁ ବହନ କରିଛ ନିଜର ଇଚ୍ଛାରେ,
ତୁମ ଚରଣରେ ଅଧମ କରୁଛି ଜଣାଣ
ସଂସାରରୁ ଶୋକ କର ତୁମେ ହରଣ //୩//



# କରୁଛି ଗୁହାରି

ଆହେ ଦୟାମୟ ଦୀନ ଦୁଃଖ ହାରି
ସନ୍ତାନ ତୁମ କରୁଛି ଅଳି
ଅଧମକୁ ତୁମ ସୁପଥରେ ନେଇ
ସୁନ୍ଦର ସଂସାର ଗଢ଼ ତୋଳି //୧//

ହିଂସା, ଦ୍ୱେଷ,କ୍ରୋଧ ମୋର ହୃଦୟରୁ
ପ୍ରଭୁ ନିଅ ସବୁ ତୁମେ ହରି
ବୁଦ୍ଧି, ବିଦ୍ୟା, ଜ୍ଞାନ ଭଲ, କର୍ମ, ଗୁଣ
ହୃଦୟରେ ମୋର ଦିଅ ଭରି //୨//

ଦୀନ, ଦୁଃଖୀ, ଜନ ସେବା କରିବାକୁ
ଶକତି ସାମର୍ଥ୍ୟ ଦିଅଭରି
ସମାଜର ସେବା କରି କରି ମୁହିଁ
ଆନନ୍ଦରେ ମନ ଯାଉ ପୁରି //୩//

ନିଜ, ଦୁଃଖ, କଷ୍ଟ ବଳି ମୁଁ ପକାଇ
ସେବା କରିବି ଜଗତ ଜନ
ଦୁଃଖ କରିବନି ସେବା କରି କରି
ଗଲିଗଲେ ମୋର ଏ ଜୀବନ //୪//

ଏତିକି ମାଗୁଣି ତୁମ ଚରଣରେ
କରୁଅଛି ଅଧମ ଅଜ୍ଞାନ
ତୁମ ଆଶିଷରେ ଆଗକୁ ବଢ଼ିବି
ଦିଅବାରେ ମୋତେ ଦିବ୍ୟଜ୍ଞାନ //୫//

✦✦✦

# ଆହେ ବିଶ୍ୱକର୍ତ୍ତା

ଆହେ ବିଶ୍ୱକର୍ତ୍ତା ତୁମେ ମୁକ୍ତିଦାତା
ଅଗତି ଗତି ଦାୟକ
ହେ ଚକାନୟନ କଳା କଳେବର
ପ୍ରାଣୀ ମୁକ୍ତି ପ୍ରଦାୟକ ॥୧॥

ପାପ ଆଉ ପୂଣ୍ୟ ଧର୍ମ ଆଉ କର୍ମ
ସଂସାରରେ ଆତଯାତ
ମଣିଷ ଏଥିରେ ଛନ୍ଦି ହୋଇଯାଏ
ଭାବିପାରେ ନାହିଁ ଅନ୍ତ ॥୨॥

ପାପ ଆଉ ପୂଣ୍ୟ ଦୁଇଟି ଯେ ରାସ୍ତା
ଯିଏ ଯେଉଁ ପଥେ ଯିବ
ସେହି ଅନୁସାରେ ତା' ପାପ ପୂଣ୍ୟର
କର୍ମଫଳ ସେ ପାଇବ ॥୩॥

ଆହେ ଜନାର୍ଦ୍ଦନ କରିଛ କପଟ
କାହିଁକି ଏପରି ରଚିଛ
ତୁମ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେବାକୁ
ଦୁଇଟି ରାସ୍ତା ବାଛିଛ ॥୪॥

ସେହି ଦୁଇରାସ୍ତା ପରୀକ୍ଷାର ଖାତା
ଯିଏ ଯେପରି ଲେଖିବ
ସେହି ଅନୁସାରେ ପରୀକ୍ଷାର ଫଳ
ତା'ଭାଗ୍ୟ ଖାତାରେ ମିଳିବ ॥୫॥



# ସୁନ୍ଦର ସୃଷ୍ଟି

ପ୍ରଣତି ଘେନ ଚରଣେ      ବିଶ୍ୱ କାରୀଗର
କେତେ ଯତନରେ ଗଢ଼ିଛ      ସୁନ୍ଦର ସଂସାର ॥

ଅଭାବ ନାହିଁ କିଛି      ଏ ବିଶାଳ ସଂସାରେ
ସବୁ ଦେଇଛ ଭରି      ଏ ଧରା ବୁକୁରେ ॥

ନରନାରୀ, ପଶୁ ପକ୍ଷୀ      କୀଟ ପତଙ୍ଗରେ
ଜଳ ଜୀବ ଗିରିବନ      ଭରିଛ ଧରାରେ ॥

ଗଗନରେ ଖଞ୍ଜି ଦେଲ      ସୂର୍ଯ୍ୟ ଚନ୍ଦ୍ର ତାରା
ମହାଶୂନ୍ୟେ ଭସାଇଲ      କେତେ ମେଘମାଳା ॥

କେତେ ଯତ୍ନ ଆଦରରେ      ସବୁ ଖଞ୍ଜି ଦେଇଛ
କେତେ ସୁନ୍ଦର ଭାବେ      ସୃଷ୍ଟି ସର୍ଜନା କରିଛ ॥

କରୁଛି ବିନତୀ ଧରି      ତୁମ ଶ୍ରୀଚରଣ
କୃପା ଛତ୍ରୀ ତଳେ ରଖ      ସର୍ଭିଙ୍କୁ ଶରଣ ॥



# ମୋ ଅଶ୍ରୁ ବାରିରେ

ହେ ପ୍ରଭୁ....

କାଳିଆ ସାଅନ୍ତ ମୋ ଅଶ୍ରୁ ବାରିରେ
ଧୋଇ ଯାଉ ତୁମ ପାଦ....
କପଟ କାହିଁକି କର ଆହେ ପ୍ରଭୁ
ଶୁଣ ନାହିଁ ମୋର ଶବ୍ଦ ॥

ଜାଣିକି ପାରୁନା ପ୍ରଭୁ ତୁମେ
ମୋ ହୃଦୟର ଭକ୍ତି ଭାବକୁ
ଜାଣିଶୁଣି କିଆଁ ଅଜଣା ହେଉଛ
ଭକ୍ତକୁ ପରୀକ୍ଷା କରିବାକୁ ॥

ଯେତେ ପରୀକ୍ଷା କରିଲେ ହେ ପ୍ରଭୁ
ହାରିଯିବି ନାହିଁ ମୁହିଁ
ବଞ୍ଚିଥିବା ଯାଏ ଡାକୁଥିବି ତୁମକୁ
ଅଳି କରି କରି ମୁହିଁ ॥





# ମୋ' ହୃଦୟର ପ୍ରଭୁ

ହେ ମୋ ହୃଦୟର ପ୍ରଭୁ
ତୁମେ ଚକାନୟନ
ତୁମ ପାଶେ ପଶିଛି
ଏ ଅଧମ ଶରଣ ॥
ତୁମ ଚରଣରେ ମୋର
କୋଟି କୋଟି ପ୍ରଣାମ
ଦୁନିଆରୁ ଦୁଃଖ କ୍ଲେଶ
ସବୁ କର ହରଣ ॥
ଦୀନ ଦୁଃଖୀ ମାନଙ୍କୁ
ଦିଅ ତୁମେ ଆଶିଷ
ପେଟ ଭରିଦିଅ ତାଙ୍କ
ନ ରୁହନ୍ତୁ ଉପାସ ॥
ସମସ୍ତଙ୍କୁ ରଖ ପ୍ରଭୁ
ତୁମ ଛତ୍ରଛାୟା ତଳେ
ରଖ ତୁମ ନଜରରେ
ଶଂଖ ଚକ୍ର ଆଡୁଆଳେ ॥



# ଶ୍ରୀକ୍ଷେତ୍ର ମଣି

ଶ୍ରୀ କ୍ଷେତ୍ରର ମଣି ମୋ କାଳିଆ ସୁନା
ରତନ ବେଦୀରେ ବସିଛ
ବାଙ୍କ ଚାହାଣିରେ କଳା ବଦନରେ
ତୁମ ଚକା ନେତ୍ରେ ଦେଖୁଛ // ୧//

ଯେବେ ଯାଏ ମୁହିଁ ତୁମରି ସମୀପ
ବିକଳରେ ନେତ୍ର ଚାହେଁ
ତୁମ ନେତ୍ରରେ ମୋ' ନେତ୍ର ମିଶିଗଲେ
ଆତ୍ମହରା ହୋଇଯାଏ // ୨//

ଆନନ୍ଦରେ ମନ ହୁଏ ପୁଲକିତ
ଆଖିରୁ ଲୋତକ ବହେ
ଅଶ୍ରୁର ଝରଣା ଭକ୍ତିର ଧାରରେ
ତୁମ ପାଶେ ମତି ରହେ //୩//

ଛାଡି ଆସି ବାଙ୍କୁ ମନ ହୁଏ ନାହିଁ
ବାର ବାର ଦେଖୁଥାଏ
ଯେତେ ଦେଖିଲେ ବି ମନ ଭରେ ନାହିଁ
ପୁନଃ ପୁନଃ ଇଚ୍ଛା ହୁଏ //୪//

ସତରେ କି ଯାଦୁ ଅଛି ତୁମ ପାଶେ
ଚୁମ୍ବକୀୟ ଆକର୍ଷଣ
ସେହି ଆକର୍ଷଣେ ଲାଖି ରହୁଛି ମୋ
ଆତ୍ମା, ଶରୀର ଓ ମନ //୫//



# ଆହେ ଜଗାକାଳିଆ....

ଆହେ ଜଗା କାଳିଆ, ନୀଳା ଚଳିଆ
ଦେଖିବାକୁ ତୁ  ଅଟୁ ଭାରି ବଢ଼ିଆ ॥

କିପରି ମନରେ ଭାବିଲୁ ଜଗା
ଏପରି ରୂପରେ ପାଇବୁ ପୂଜା ॥

ହାତ ଗୋଡ ତୋର ନାହିଁ ପୁରା
ଖାଲି ଚକା ଆଖି ଦିଶେ ତୋରା ॥

ସେହି ଚକା ଚକା ଆଖିରେ ତୋର
ମନ କିଣି ନେଉ ସଭିଜନଙ୍କର ॥

ସେ ଚକା ଆଖିକୁ ଚାହିଁ ଦେଲେ ଥରେ
କେତେ ପାପରୁ  ଯେ ମୁକତି ମିଳେ ॥

ଆହେ ଜଗାକାଳିଆ ନୀଳା ଚଳିଆ
ଦେଖିବାକୁ ତୁ ଭାରି ବଢ଼ିଆ ଭାରି ବଢ଼ିଆ ॥



# ତୁମ ପାଶ ଯିବା ପାଇଁ
# ମନ ହୁଏ ଛନ ଛନ

ଜଗତର ନାଥ ଆହେ ଜଗନ୍ନାଥ
ଜଗତର ନାଥ ବୋଲି ଜଗତେ ବିଖ୍ୟାତ
ତୁମ ଦରଶନ ଲାଗି ମନ ହୁଏ ବ୍ୟାକୁଳିତ
(ତୁମ) ଡୋରି ନ ଲାଗିଲେ କିଏ ଯାଇ ପାରିବତ !

ତୁମ ପାଶ ଥରେ ଗଲେ ଆସିବାକୁ ନୁହେଁ ମନ
ତୁମ ପାଶେ ଯିବାପାଇଁ ମନ ହୁଏ ଛନ ଛନ
ଥରେ ଚାହିଁ ଦେଲେ ନେତ୍ର ମନ ହୁଅଇ ପବିତ୍ର
ସେଥିପାଇଁ ଯିବା ଲାଗି ମନ ହୁଏ ପ୍ରତିଦିନ ।

ତୁମ ଅବଢ଼ା ପାଣିରେ ରହିଥାଏ ମନ ମୋର
ଖାଇ ମହା ପ୍ରସାଦ ଆସେ ଆନନ୍ଦ ମୁଖର
ଆସିଲା ବେଳେ କରେ ମୁହିଁ ଭକ୍ତିପୂତ ପ୍ରଣାମ
ଏତିକି ଅଳି ମୋର କର ଜଗତର କଲ୍ୟାଣ ।



# ହେ କାଳିଆ ସାଆନ୍ତ !

ହେ କାଳିଆ ସାଆନ୍ତ !
କି' ସୁନ୍ଦର ତୁମ ମୁଖମଣ୍ଡଳ
କଳା ବଦନରେ ନାଲି ଓଠ ତୁମ
ଧଳା ଧଳା ଚକା ଆଖିରେ
କଳା ଚକାଡୋଳା ତୁମର
ସତରେ.... ଦିଶୁଅଛ ଭାରି ସୁନ୍ଦର ॥

ସେମିତି ଅପଲକେ ନୟନେ
ତୁମ ଚନ୍ଦ୍ର ବଦନକୁ ସଦା
ଦେଖିବାକୁ ଇଚ୍ଛା ହେଉଛି ମୋର....
ସତରେ କି' ସୁନ୍ଦର ତୁମ ମୁଖ ମଣ୍ଡଳ
ଦିଶୁ ଅଛ ତୁମେ ଭାରି ସୁନ୍ଦର ॥



# ମୋ କାଳିଆ ସୁନା

ହୃଦୟ ଠାକୁର ମୋର, କାଳିଆ ସୁନାରେ
ସତ କହୁଛି ମୁଁ ତୋତେ ରେ....
ତୋର କୃଷ୍ଣ ବଦନରେ, ଉଛାନାକ ଆଉ
ଚକା ଚକା ଆଖି ମୋତେ
ଭାରି ଭଲ ଲାଗେରେ....
ସବୁବେଳେ ତୋର କଳା ବଦନକୁ
ଦେଖିବାକୁ ଇଛା ହୁଏରେ....
କାହିଁକି କେଜାଣି ଭ୍ରମରେ ପକାଇ
କରୁଅଛୁ ମୋତେ ଛଟପଟ
ସବୁବେଳେ ତୋତେ ଦେଖିବାକୁ
ମୋର ମନ ହୁଏ ଭାରି ଉଚ୍ଚାଟ....
ତୋ' କୃଷ୍ଣ ବଦନକୁ ଦେଖିଦେଲେ ଥରେ
ଦୂର ହୋଇଯାଏ ସବୁ ଦୁଃଖକଷ୍ଟ
ହୃଦୟ ଠାକୁର ମୋର, କାଳିଆ ସୁନାରେ
ସତ କହୁଛି ମୁଁ ତୋତେ ରେ....
ସତ କହୁଛି ମୁଁ ତୋତେ ରେ.... ॥



# ଦିଅ ନାହିଁ ଧରା

କଳାକାହ୍ନୁ ତୁମେ କାଳିଆ ସାଅନ୍ତ
ଟକା ଟକା ନେତ୍ରେ ଚାହିଁଛ
ରତ୍ନସିଂହାସନେ ବସି ରହି ତୁମେ
ସାରା ଜଗତକୁ ପାଳୁଛ ॥୧॥

ଜଗତରେ ପ୍ରଭୁ ଚାଲିଅଛି କେତେ
ନୀତି ଅନୀତିର ଖେଳ
ସବୁତ ଜାଣୁଛ ନ ଜାଣିଲା ପରି
ଏହା ତ ତୁମର ଖେଳ ॥୨॥

ଏ ଖେଳ ନଥିଲେ କି ସଂସାର ହୁଏ
ସବୁତ ତୁମରି ଲୀଳା
ଏହି ଲୀଳାମୟ ସଂସାରରେ ତୁମେ
କରୁଛ ମାୟାର ଖେଳା ॥୩॥

ଏହି ମାୟା ଖେଳେ ଯୁଗ ବିତିଯାଏ
ଦିଅ ନାହିଁ ତୁମେ ଧରା
ତୁମେ ଅଛ ବୋଲି କିଏ ନ ଜାଣିଛି
ଏ ସୃଷ୍ଟି ସଂସାର ସାରା ॥୪॥

ତୁମରି ଇଚ୍ଛାରେ ଚାଲିଛି ସଂସାର
ତୁମେ ତ ସଂସାର କର୍ତ୍ତା
ତୁମ ବିନାଗଛ ପତ୍ର ବି ହଲେନି
ତୁମେ ହିଁ ସର୍ବ ନିୟନ୍ତା ॥୫॥

✦✦✦

# ଅନ୍ତରରୁ ପଦେ....

ପ୍ରଭୁ ଚକାଆଖି ତୋତେ ଡାକି ଡାକି
କଣ୍ଠ ଗଲାଣି ମୋ ଶୁଖି
ତଥାପି ଶୁଣୁନା ବାରେ ମୋର ଡାକ
ନିରବ ରହିଛ କାହିଁକି ? ।।୧।।

କିପରି ଡାକିଲେ ଶୁଣିବ ହେ ପ୍ରଭୁ
କେମିତି ଜାଣିବି ମୁହିଁ
ଅନ୍ତର ଭିତରୁ ଡାକୁଅଛି ସଦା
ବେଳ ଅବେଳରେ ତୁହି ।।୨।।

ଆଖିର ଲୋତକ ଧାରର ବିନ୍ଦୁରେ
ତୁମ ପାଦ ଦିଏ ଧୋଇ
ସେହି ଲୋତକର ଜଳେ ଦେଖେ ମୁହିଁ
ତୁମେ ଅଛ ମୋତେ ଚାହିଁ ।।୩।।

ଆଉ କିଛି ମୋର ଲୋଡା ନାହିଁ ପ୍ରଭୁ
ଏମିତି ରହିଥା ଚାହିଁ
ତୁମ ଚାହିଁବାରେ ଯାଉ ମୋ ଜୀବନ
ତୁମରି ଆଶିଷ ପାଇ ।।୪।।



# ଲୋଡା ନାହିଁ ଧନରତ୍ନ

ହେ ପରମେଶ୍ୱର ଜୀବନରେ କେବେ
ମାଗିନି ତୁମକୁ ଧନ ଦୌଲତ
କେବଳ ତୁମର ଅଥଳ ସିନ୍ଧୁର
ଅଜସ୍ର କରୁଣାରୁ ବିନ୍ଦୁଏ ମାତ୍ର ।।

ବିନ୍ଦୁଏ କରୁଣା ଦେଇଦେଲେ ପ୍ରଭୁ
. ସରିଯିବ ନାହିଁ କେବେ ତୁମର
ବିନ୍ଦୁଏ କରୁଣାରେ ଏ ଦୀନ ଦୁଃଖୀର
ଦୁଃଖ ଚାଲିଯିବ ବହୁତଦୂର ।।

ସେତିକି ଦେବାକୁ କୁଣ୍ଠାବୋଧ ପ୍ରଭୁ
କରିବନି ହେଲେ ଯେବେ
ଏ ଅଜ୍ଞାନ ଅଧମ ଶରଣ ପଶିଛି
ଭାଙ୍ଗିଯିବ ନାହିଁ କେବେ ।।

ଯାହା ତ କରିବ ଭଲ ପାଇଁ ମୋର
ଏ କଥା ମୁହିଁ ଜାଣିଛି
ଏହି ବିଶ୍ୱାସରେ ଚାଲିଅଛି ବାଟ
ସଦା ଧ୍ୟାନରେ ରଖିଛି ।।



# ଭକ୍ତର ବନ୍ଧୁ

ଆହେ ଜଗନ୍ନାଥ ତୁମେ ଦୀନନାଥ
ଦୀନଜନ ଦୁଃଖୀ ବନ୍ଧୁ
ଡାକିଲେ ଭକତ ହୃଦୟ କନ୍ଦରେ
ବର୍ଷା କର କୃପା ବିନ୍ଦୁ //୧//

ସୀମାହୀନ ତୁମ ଆଶିଷ ସାଗରେ
ଭସାଇ ଭସାଇ ନିଅ
ଠିକଣା ଜାଗାରେ ପହଞ୍ଚାଇ ତାକୁ
ମନେ ମନେ ଖୁସି ହୁଅ //୨//

ତୁମରି ଅପାର କରୁଣା ଯା'ଠାରେ
ଅମୃତ ବରଷି ଦିଏ
ସଂସାରର ଦୁଃଖ ସାଗରୁ ସେ ପ୍ରାଣୀ
ସୁଖେ ପାରି ହୋଇଯାଏ //୩//

ସେହି ଖୁସିଭରା ସୁଖ ଆନନ୍ଦରେ
ଦିନ ଯାଏ ତା'ର କଟି
ତୁମ ପଦ୍ମପାଦେ ଲୟ ରଖିସଦା
ସଂସାରରୁ ଯାଏ ତିଷ୍ଟି //୪//



# ଆହେ ପରଂବ୍ରହ୍ମ ଶ୍ରୀକ୍ଷେତ୍ର ବିହାରୀ

ଆହେ ପରଂବ୍ରହ୍ମ ଶ୍ରୀକ୍ଷେତ୍ର ବିହାରୀ
ଦାରୁ ମୂର୍ତ୍ତି ମୁରାରୀ
ତୁମ ଭୁଜତଳେ ଅଧମ ଆଶ୍ରିତ
କରୁଛି ତୁମକୁ ଗୁହାରି // ୧ //

ଏତେ ଲୀଳା ପ୍ରଭୁ କିପରି ରଚିଛ
ଅଜ୍ଞାନ ଜାଣିନି କିଛି
କେବଳ ଜାଣୁଛି ତୁମରି ମହିମା
ଚଳିଛି ଏ ଧରା ରୀତି // ୨ //

ଶ୍ରୀକ୍ଷେତ୍ରର ଲୀଳା ଏତ ମହାଲୀଳା
କରି କରାଉଛ ଭବେ
ଭାବିଲେ ସବୁତ ଆଶ୍ଚର୍ଯ୍ୟ ଲାଗୁଛି
କରୁଛ କିପରି ଭାବେ //୩//

ଷାଠିଏ ପଉଟି ଭୋଗ ରନ୍ଧା ହୁଏ
ହାଣ୍ଡି ପରେ ହାଣ୍ଡି ଥୋଇ
ନିମିଷକ ମଧ୍ୟେ ରାନ୍ଧି ହୋଇଯାଏ
ଲକ୍ଷ ଲକ୍ଷ ଜନ ପାଇଁ // ୪ //

ଏହି ଭୋଗ ନୁହେଁ କେବଳ ପ୍ରସାଦ
ଅମୃତ ସମ ନୈବେଦ୍ୟ
ବିମଳାଙ୍କ ପାଶେ ସମର୍ପଣ ପରେ
ହୋଇଯାଏ ମହାପ୍ରସାଦ // ୫ //

ଏ ଅମୃତମୟ ମହାପ୍ରସାଦକୁ
ଭକ୍ତଜନ କଲେ ପାନ
ଜନ୍ମ ଜନ୍ମାନ୍ତର ପାପକ୍ଷୟ ହୋଇ
ମିଳିଯାଏ କେତେ ପୁଣ୍ୟ // ୬ //



# ବଳିଆର ଭୁଜ

ବଳିଆର ଭୁଜ ହେ ଚକାନୟନ
ତୁମେ ଜଗତର ନାଥ
ତୁମ ପାଶେ ନାହିଁ ଜାତି, ଧର୍ମ, ବଡ
ମଣିଷ ପଣିଆ ଶ୍ରେଷ୍ଠ ॥୧॥

କଳିଯୁଗର ତ ଠାକୁର ହେ ତୁମେ
ସତ୍ୟ ତୁମେ ସନାତନ
ଯୁଗ ଯୁଗ ଧରି ତୁମରି ମହିମା
ମର୍ତ୍ତ ମଣ୍ଡଳେ ଦର୍ଶନ ॥୨॥

ସତ୍ୟ ଯୁଗରେ ତ ଶ୍ରୀ ନୃସିଂହନାଥ
ଶ୍ରୀହରି ନାମେ ପରିଚିତ
ତ୍ରେତୟା ଯୁଗରେ ରାମ ରଘୁନାଥ
ଦ୍ୱାପରରେ କୃଷ୍ଣ ଗୋପୀନାଥ ॥୩॥

କଳି ଯୁଗେ ନାମ ବ୍ରହ୍ମ ଯେ ସ୍ୱରୂପ
ଦାରୁ ବ୍ରହ୍ମ ଜଗନ୍ନାଥ
ଅବତାରି ତୁମେ ଯୁଗ ଯୁଗ ଧରି
ବିଶ୍ୱ ବ୍ରହ୍ମାଣ୍ଡର ନାଥ ॥୪॥

ତୁମ ବିନା ନୁହେଁ ଧରା ଧାମ ସ୍ଥିତି
ତୁମେ ତ ବ୍ରହ୍ମାଣ୍ଡ କର୍ତ୍ତା
ତୁମେ ହିଁ ସର୍ଜନା ତୁମେ ହିଁ ସୃଷ୍ଟି
ତୁମେ ଜଗତର ପିତା ॥୫॥



# ଆହେ ଦୀନକୃଷ୍ଣ

ଆହେ ଦୀନକୃଷ୍ଣ କରୁଣା ସାଗର
ତୁମି କରୁଣାର ସିନ୍ଧୁ
କରୁଣା ବାରିଧି ବରଷାଇ ଦିଅ
ଭାବେ ଡାକେ ଭକ୍ତବନ୍ଧୁ ॥୧॥

ଭକତର ଭାବେ ବନ୍ଧା ଅଟ ତୁମେ
ଭକତ ସଦା ତୁମର
ଭକତକୁ ଛାଡ଼ି ତୁମେ ରୁହ ନାହିଁ
ତୁମେ ସଦା ଭକତର ॥୨॥

ଦୁଃଖରେ,ସୁଖରେ ସଦା ବେଳେ ଥାଅ
ଭକତର ପାଶେ ପାଶେ
ବିପଦେ ଡ଼ାକିଲେ ଚଳି ଆସି ତୁମେ
ଉଦ୍ଧାର କର ନିମିଷେ ॥୩॥

ତୁମ ଆଶିଷରେ ଭକ୍ତ ହୁଏ ପାର
ତୁମେ ତ କରୁଣାକର
ତୁମରି କରୁଣା ବରଷା ବିନ୍ଦୁରେ
ଭକ୍ତକୁ କର ଉଦ୍ଧାର ॥୪॥



# ଲାଗିଲା ଡ଼ୋରି

ବହୁତ ଅପେକ୍ଷା ପରେ ଲାଗିଲା ତୋ' ଡ଼ୋରି
ଆସିଥିଲି କାଳିଆ ତୋ' ଦରଶନ କରି ।।

ତୋ' ଦରଶନ କଲି ଚକା ମୁହଁ ଦେଖିଲି
ତୋ' ଅପଲକ ନେତ୍ରେ ମୋ' ନେତ୍ର ମିଶାଇଲି ।।

ଆନନ୍ଦରେ ପୁରିଗଲା ହୃଦ ଆତ୍ମା ମୋର
ଅପେକ୍ଷାର ଅନ୍ତ ହେଲା ଅନେକ ଦିନର

ଛଡ଼ା ତୁଳସୀ ପାଇ ହେଲି ଆନନ୍ଦ ମୁହିଁ
ଅବଢ଼ା ଭୋଗ ଖାଇ ଯିବି ହରଷ ହୋଇ ।।

ଆସିଥିଲି କାଳିଆ ତୋ' ଦରଶନ କରି
ତୋତେ ଦରଶନ ସାରି ଯାଉଛି ମୁଁ ଫେରି

ତୋତେ ଛାଡ଼ି ଯିବାକୁ ମୋ ମନ ବଳୁନାହିଁ
ବାର ବାର ଦେଖିବାକୁ ଇଛା ହେଉଥାଇ ।।

କରୁଛି ଅଳି ମୁହିଁ କୃପା କରିବୁ ତୁହି
ପୁଣି ଲାଗିଲେ ଡ଼ୋରି ଆସିବି ପାଶେ ମୁହିଁ ।।



# ପ୍ରଭୁ ତୁମେ ଏକା ସତ୍ୟ

ଏ ମାୟା ସଂସାରେ ତୁମେ ଏକା ସତ୍ୟ
ତୁମ ବିନା ନୁହେଁ ପ୍ରାଣ
ତୁମରି ଚରଣେ ରହି ଯାଉ ଦିନ
ଏହା ମୋର ନିବେଦନ ॥ ୧ ॥

ଏ ମାୟା ସଂସାରେ ବନ୍ଧାପଡି ମନ
କେତେ ଯନ୍ତ୍ରଣା ଭୋଗୁଛି
ଦୁଃଖ, ଯନ୍ତ୍ରଣାକୁ ଅଙ୍ଗେ ଲିଭାଇଣ
ଆଖିରୁ ଲୁହ ଝରୁଛି ॥ ୨ ॥

କେତେ ବେଳେ ଦୁଃଖ କେତେ ବେଳେ ସୁଖ
ଦେଉଛ ହେ ପ୍ରଭୁ ନିତି
ସବୁ ତ ତୁମରି ମାୟାର ଖେଳ
ସହିଯାଏ ଦିନ ବିତି ॥୩॥

ଏ ମାୟା ଖେଳରୁ ଜିତିବାକୁ ମୋତେ
ଧୈର୍ଯ୍ୟ ଶକ୍ତି ଦିଅ ଭରି
ସବୁ ସହି ମୁହିଁ ଜୀବନ ବଞ୍ଚିବି
ଦୁଃଖ,ସୁଖ ସାମ୍ନା କରି ॥୪॥

ଶୟନେ ସ୍ୱପନେ ଜାଗରଣେ ସଦା
ତୁମ ନାମ ଗାଇ ଗାଇ
ସଂସାର ବନ୍ଧନ ମାୟାରୁ ମୁକୁତି
ଯିବି ତୁମ ନାମ ଧ୍ୟାୟୀ ॥୫॥



# କରୁଣାର ସିନ୍ଧୁ

ଲୀଳାମୟ ପ୍ରଭୁ ଯୁଗ ଅବତାର
ତୁମେ କରୁଣାର ସିନ୍ଧୁ
ତୁମରି ଚରଣେ ରହିଲି ଶରଣ
ଲୋଡା ମୋ କରୁଣା ବିନ୍ଦୁ //୧//

ତୁମରି କରୁଣା ବାରିଧି ପୟରେ
ଚାଲିବି ଜୀବନ ପଥ
ତୁମ ନାମ ଜପି ଏ ଭବ ସାଗରେ
କର୍ମ କରିବି ନିୟତ //୨//
କର୍ମରେ ରହିଲେ ଦୋଷ ତ୍ରୁଟି ମୋର
କ୍ଷମା କରିଦେବ ପ୍ରଭୁ
ସତ ପଥେ ରହି କର୍ମ କରିବାକୁ
ଆଶିଷ ମାଗେ ତୁମକୁ //୩//

ସତ୍‌ପଥେ ନେଇ ଜୀବନ ଯୁଦ୍ଧରେ
ଜିତିବାକୁ ଦେବ ମୋତେ
ହାରିଗଲେ ମଧ୍ୟ ଦୁଃଖ କରିବିନି
ସବୁ ତ ତୁମରି ହାତେ //୪//
ଏତିକି ଜାଣିଛି କରୁଣା ସାଗର
ତୁମେ ଆମ ସୃଷ୍ଟି କର୍ତ୍ତା
ତୁମ ପାଶେ ନାହିଁ ଅନ୍ତର ପାନ୍ତର
ତୁମେ ହିଁ ସର୍ବ ନିୟନ୍ତା //୫//
ଯାହାତ କରିବ ସବୁରି ମଙ୍ଗଳ
ତୁମେ ତ କରୁଣାମୟ
ଏହି ବିଶ୍ୱାସରେ ଚାଲିଅଛି ବାଟ
ରହି ତୁମ ଶ୍ରୀ ପୟର //୬//



# ପ୍ରଭୁଙ୍କର ମହାଲୀଳା ରଥଯାତ୍ରା

ଜଗତର ନାଥ ଜଗତ ଠାକୁର
କି ଭାବ ଲୀଳା ରଚିଛ
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରିଣ
ରଥ ଉପରେ ବସିଛ ॥୧॥

ରତ୍ନ ସିଂହାସନୁ ଓହ୍ଲାଇ ଆସିଛ
ବଡ଼ ଦାଣ୍ଡେ ବିଜେ କରି
ଭକତ ମାନଙ୍କୁ ଅନାଇ ରହିଛ
ଅପଲକ ନେତ୍ର ଭରି ॥୨॥

ବଡ଼ ଦାଣ୍ଡେ ନାହିଁ ଜାତି ଧର୍ମ ବର୍ଣ୍ଣ
ଛୁଆ ଅଛୁଁଆର ଭେଦ
ସେଥିପାଇଁ ପ୍ରଭୁ ଏ ଲୀଳା ତୁମର
କା' ମନେ ନ ଦିଅ ଖେଦ ॥୩॥

ହିନ୍ଦୁ, ମୁସଲମାନ ଶିଖ୍, ଖ୍ରୀଷ୍ଟୟାନ୍
ସବୁ ତୁମରି ସନ୍ତାନ
କର ନାହିଁ ପ୍ରଭୁ ଅନ୍ତର ପାନ୍ତର
ସମସ୍ତେ ପା'ନ୍ତୁ ଦର୍ଶନ ॥୪॥

ଭକ୍ତ ସାଲବେଗ ଥିଲା ଯେ ତୁମର
ସବୁଠାରୁ ବଡ଼ ଭକ୍ତ
ଦାସିଆ ବାଉରୀ ନଡ଼ିଆ ଯାଚିଲା
ଧରିନେଲ ତା'ର ହସ୍ତ ॥୫॥

ଏହିପରି ଲୀଳା ରଚି ପ୍ରଭୁ ତୁମେ
ସୃଷ୍ଟି କଲ ରଥଯାତ୍ରା
ମାଉସୀ ମା' ହାତ ପୋଡ଼ ପିଠା ଖାଇ
ରଚିଗଲ ମହାଗାଥା ॥୬॥



# ବିଲୟ ନ ହେଉ ସୃଷ୍ଟି

ଦୟାମୟ ହରି ଦୀନ ଦୁଃଖ ହାରି
ସନ୍ତାନ ତୁମ କରୁଛି ଗୁହାରି
ଦିବ୍ୟ ଜ୍ଞାନ ଦେଇ ସୁପଥରେ ନେଇ
ସଂସାରକୁ କର ଗୋଲକପୁରୀ ॥ ୧ ॥

କୋଟିଏ ଭିତରୁ ଗୋଟିଏ କର ହେ
ମାନବ ସେବାରେ ଜୀବନ ଯାଉ
ଦୁଃଖୀ, ରଙ୍କି, ଆର୍ତ୍ତ ମାନଙ୍କ ସେବାରେ
ଜୀବନ ମୋହରି ଧନ୍ୟ ହେଉ ॥ ୨ ॥

ତୁମରି ଚରଣେ ଶରଣ ପଶୁଛି
ଆଶିଷ ଟିକିଏ ମିଳୁ
ସଂସାରରେ ଯେତେ ରହିଅଛି ଦୁଃଖ
ଅକ୍ଳେଶରେ ଝରିପଡୁ ॥୩॥

ମାନବ ସେବାରେ ମନ ଲାଗି ରହୁ
କିଛି ମୋର ଲୋଡା ନାହିଁ
ମାନବ ସମାଜ ସୁଧୁରି ଗଲେ ତ
ମାଧବ ଆସିବେ ଧାଇଁ ॥୪॥

ଏଇ ମୋର ଅଳି ତୋଳିନିଅ ହରି
ସଂସାରେ ବିରାଜୁ ଶାନ୍ତି
ମୋ ଜୀବନ ପଛେ ନରକକୁ ଯାଉ
ବିଳୟ ନ ହେଉ ସୃଷ୍ଟି ॥୫॥



# ଜଗତର କର୍ତ୍ତା

ପ୍ରଭୁ ପରମେଶ୍ୱର ତୁମେ ଜଗତର କର୍ତ୍ତା
ଜଗତର ହିତପାଇଁ ଦିଅ ତୁମେ ବାର୍ତ୍ତା ।।

କେତେ ଦୁଃଖ, ସୁଖ ଭଲ ମନ୍ଦ ଲାଗିଛି ସଂସାରେ
ସବୁ ତ ଚାଲିଛି ପ୍ରଭୁ ତୁମରି ଆଜ୍ଞାରେ ।।

ତୁମ ପଦଧ୍ୟାୟୀ ଯିଏ ଚଳଇ ସଂସାରେ
ତାକୁ ତୁମେ ସାହା ହୁଅ ଅତି ଆନନ୍ଦରେ ।।

ତୁମ ପାଖେ ନାହିଁ ଧନୀ ଗରିବର ଭେଦ
ସଭିଙ୍କୁ ଦେଖାଅ ତୁମେ ସମାନର ଭାବ ।।

ତୁମକୁ ଡାକଇଯିଏ ଭକ୍ତି ଭରେ ଜନ
ଖୁସି ହୋଇ ତୁମେ ରଖ ତା' ମହତମାନ ।।



# ସମସ୍ତେ ରୁହନ୍ତୁ ଭଲରେ

ପ୍ରଭୁ ଅନ୍ତର୍ଯ୍ୟାମୀ ଅନନ୍ତ ଈଶ୍ୱର
ତୁମେ ହେ କରୁଣାକର
ତୁମରି କରୁଣା ବାରିଧିରେ ଝଲେ
ଲୀଳାମୟ ଏ ସଂସାର //୧//

ଦୁଃଖ, ସୁଖ ଭରା ଏହି ସଂସାରରେ
ତୁମେ ତ ସରବକର୍ତ୍ତା
ତୁମରି ସଂସାର ତୁମରି ସର୍ଜନା
ତୁମେ ହିଁ ପାଳନ କର୍ତ୍ତା //୨//

ତୁମ ବିନା ନୁହେଁ ଏ ସଂସାର ରୀତି
ଝହିଁବାରେ ଦିନରାତି
ରାତି ପାହି ଦିନ ଦିନ ପରେ ରାତି
ଅଗତିର ତୁମେ ଗତି //୩//

ତୁମରି ଚରଣେ ଅଧମ ଶରଣ
ଭିକ୍ଷା ମାଗୁଛି ତୁମକୁ
ସଂସାର ଡଙ୍ଗାକୁ ବାହି ନିଅ ପ୍ରଭୁ
ଭଲେ ରଖ ସମସ୍ତଙ୍କୁ //୪//

+++

# କାଳିଆରେ.....

କାଳିଆରେ....
ତୋର ଡୋରି ଲାଗିଲା
ଆସିଲି ତୋ ପାଶେ ଧାଇଁ
ଅଠର ନଳାରୁ ଦର୍ଶନ କରିଲି
ତୋ' ନେତ ଆନନ୍ଦେ ଚହିଁ //୧//

ବଡଦାଣ୍ଡରେ ପାଦଦେଲା ପରେ
ତୋ ରେଣୁ ପାଇଲି ମୁହିଁ
ବିକଳରେ ଯାଇ ଅରୁଣ ଖୁମ୍ବରେ
ମୁଣ୍ଡିଆ ମାରିଲି ଯହିଁ //୨//

ସିଂହଦ୍ୱାର ଦେଇ ବାଇଶି ପାହାଚେ
ପହଞ୍ଚିଲି ଯେତେବେଳେ
ତୁଳସୀର ହାର ଦୟଣାର ଚୂଳ
ସାଥେ ନେଲି ହରଷରେ //୩//

ରତ୍ନ ସିଂହାସନ ପାଶେ ଗଲାପରେ
ଅର୍ପଣ କରିଲି ତୋତେ
ତୋ' ନେତ୍ରକୁ ଦେଖି ବିହ୍ୱୋଳିତ ହେଲି
ଲୁହ ଭରିଗଲା ନେତ୍ରେ //୪//



# ହୃଦୟ ଠାକୁର ମୋର....

ହୃଦୟ ଠାକୁର ମୋର, କାଳିଆ ସୁନାରେ
ସତ କହୁଛି ମୁଁ ତୋତେ ରେ....
ତୋର କୃଷ୍ଣ ବଦନରେ ଚକା ଆଖି
ଉଚ୍ଚା ନାକ ଆଉ ନାଲି ଓଠ
ମୋତେ ଭାରି ଭଲ ଲାଗେରେ....
ସବୁବେଳେ ତୋ କଳା ବଦନକୁ
ଦେଖିବାକୁ ଇଚ୍ଛା ହୁଏ ରେ....
କାହିଁକି କେଜାଣି ଭ୍ରମରେ ପକାଇ
କରୁଅଛୁ ମୋତେ ଛଟପଟ
ସବୁବେଳେ ତୋତେ ଦେଖିବାକୁ
ମୋର ମନ ହୁଏ ଭାରି ଉଚ୍ଚାଟ....
ତୋ କୃଷ୍ଣ ବଦନକୁ ଦେଖିଦେଲେ ଥରେ
ଦୂର ହୋଇଯାଏ ସବୁ ଦୁଃଖ କଷ୍ଟ
ମୋ କାଳିଆ ସୁନାରେ
ସତ କହୁଛି ମୁଁ ତୋତେରେ....
ସତ କହୁଛି ମୁଁ....।।



# କେତେ ହସ କେତେ କାନ୍ଦ

ଆହେ ପ୍ରଭୁ ଚକ୍ରଧର
କି ଲୀଳା ରଚିଛ ସଂସାରେ
କେତେ ହସ, କେତେ କାନ୍ଦ
ଭରି ଦେଇଛି ଜୀବନରେ ॥
ଦୁଃଖ, ସୁଖ, ଭଲ ମନ୍ଦ
ଲାଗିଛି ଏ ମାୟା ସଂସାରେ
ସବୁ ପ୍ରଭୁ ଚଳିଅଛି
ତୁମରି ଇଚ୍ଛା ଅନିଚ୍ଛାରେ ॥
କେତେବେଳେ କେତେ ଖୁସି
ଓଜାଡୁଛ ଅମାପରେ
କେତେବେଳେ ଦୁଃଖ ଦେଇ
ଭିଜାଉଛ ଅଶ୍ରୁ ପ୍ଲାବନରେ ॥
ଦୁଃଖ ଯଦି ଦେଉଅଛ
ସହିବାକୁ ଶକ୍ତି ଦିଅ
ଧୈର୍ଯ୍ୟଧରି ରହିବାକୁ
ମନେ ମୋର ବଳଦିଅ ॥
ଦୁଃଖ ଦିଅ ସୁଖଦିଅ
ସବୁ ସହିବାକୁ ପଡିବ
ଜୀବନ ସଂଗ୍ରାମ ଯୁଦ୍ଧରେ
ବଞ୍ଚିବାକୁ ତ ହେବ.... !!!



# ଅଶେଷ ମହିମା

ଜଗନ୍ନାଥ ମହାପ୍ରଭୁ ତୁମର ଅଶେଷ ମହିମା
କେ କହିପାରିବ ତୁମର ଗୁଣ ଆଉ ଗାରିମା ।
କେତେ ଯେ ଲୀଳା ଖେଳା ଅଛି ତୁମର
ଆଦିଅନ୍ତ କିଛି ନାହିଁ ତାହାର ।
ଶ୍ରୀକ୍ଷେତ୍ର ଧାମରେ ରହିଅଛ,
ବଡ ଠାକୁର ନାମେ ପୂଜା ପାଉଛ ।
ବଡ ଠାକୁର ତୁମେ ବଡ ଦାଣ୍ଡ ତୁମର
ବଡ ଦାଣ୍ଡର ଧୂଳି ପବିତ୍ରର ଘର ।
ପୃଥିବୀର ସବୁଠୁ ବଡ ରୋଷେଇ ଘର ତୁମର
ଷାଠିଏ ପଉଟି ଭୋଗ ରନ୍ଧାହୁଏ ଭକ୍ତ ଜନଙ୍କର ।
ସେ ଭୋଗ ତ ଖାଲି ଭୋଗ ନୁହେଁ କି ନୁହେଁ ପ୍ରସାଦ
ଦୁନିଆର ସବୁ ଭୋଗ ଠୁ ବଡ ମହା ପ୍ରସାଦ ।
ପ୍ରଭୁ କେତେ ଯେ ଅଛି ତୁମର ଲୀଳା ଖେଳା
ଏ ଅଜ୍ଞାନ କହିପାରିବକି ସବୁ ଭଲା.... ?



# ଆହେ ଚକାଡ଼ୋଳା

ଆହେ ଚକାଡ଼ୋଳା କାଳିଆ ଠାକୁର
କି ଲୀଳା ରଚିଛ ସଂସାରେ
ଭାଇ ଭଉଣୀଙ୍କୁ ସାଙ୍ଗରେ ଯେ ଧରି
ବସିଛ ରତ୍ନ ସିଂହାସନରେ ।। ୧।।

ରତ୍ନ ସିଂହାସନେ ବିଜେ କରି ଅଛ
କେଡେ ସୁନ୍ଦର ରୂପରେ
ସେ ସୁନ୍ଦର ରୂପ ଦେଖି ଦେଲେ ଥରେ
ମନ ମୋହିଯାଏ ଭକ୍ତିରେ ।। ୨।।

ତୁମ ରୂପ ଦେଖି ଭକ୍ତ ହୁଏ ଖୁସି
ଆନନ୍ଦରେ ମନ ମୋହେ
ଭକ୍ତର ଡାକକୁ ଜାଣ ପ୍ରଭୁ ତୁମେ
ଭକ୍ତିରେ ଯେ ତୁମକୁ କହେ ।।୩।।

ଭକ୍ତି ଅର୍ଘ୍ୟ ପାଇ ଖୁସି ହୁଅ ତୁମେ
ନାହିଁ ଲୋଡା ଧୂପ ଦୀପରେ
ଆଶୀର୍ବାଦ କର ଭକତ ଜନଙ୍କୁ
ଡାକୁଥାଏ ଯେ ଭକ୍ତିରେ ।।୪।।



# ନିଜସ୍ୱ ଅନୁଭୂତି

ଯାଇଥିଲି ଦିନେ ଶ୍ରୀକ୍ଷେତ୍ର ପୁରୀ
ମୋ ଜଗା କାଳିଆ ଦର୍ଶନ କରି,
କାର୍ତ୍ତିକ ମାସର ବଡ଼ ଏକାଦଶୀ
ଭିଡ଼ ହୋଇଥିଲା ସେଠାରେ ବେଶି ।
ଭିଡ ଭିତରେ ମୁଁ ଦର୍ଶନ କଲି
ଆଖି ପିଛୁଳାକେ ଫେରି ଆସିଲି
ଦର୍ଶନରେ ମୋ' ମନ ପୁରିଲା ନାହିଁ
ମନେ ମନେ ମୁହିଁ ଦୁଃଖିତ ହେଲି ।
ମନ୍ଦିର ବେଢ଼ାରୁ ବାହାରିଲା ବେଳେ
ନୀଳଚକ୍ରକୁ ମୁଁ ପ୍ରଣାମ କଲି
ଯାହା ମୁଁ ଦେଖିଲି ଆଶ୍ଚର୍ଯ୍ୟ ହେଲି
ନୀଳ ଚକ୍ରରେ ପ୍ରଭୁଙ୍କୁ ଦର୍ଶନ କଲି ।
ମହାପ୍ରଭୁ ଚାହିଁଥାନ୍ତି ଚକା ଚକା ନେତ୍ରରେ
ଆନନ୍ଦିତ ହେଲି ଦେଖି ମନ ଭିତରେ,
ଖେଳିଗଲା ମୋର ଦେହରେ ଶିହରଣ
ସତରେ ପ୍ରଭୁ ତୁମେ ଅଟ ମହାନ୍ ।
ଆଖିରୁ ବହିଲା ମୋ' ଅଶ୍ରୁ ଧାର ଧାର
ସତରେ ପ୍ରଭୁ ତୁମେ ଅଟ ଭକ୍ତର,
ତୁମ ଚରଣରେ ମୋର କୋଟି ପ୍ରଣାମ
ତୁମ ନାମ ଧରି ଯାଉ ଅନ୍ତିକାର ଦିନ ।
ଧନ୍ୟ ମହାପ୍ରଭୁ ଧନ୍ୟ ତୁମର ମହିମା
କେ କହି ପାରିବ ତୁମର ଗୁଣ ଗାରିମା,
ଭକ୍ତକୁ ପ୍ରଭୁ ତୁମେ କେବେ କରନାହିଁ ହେଳା
ଭକ୍ତର ଭାବକୁ ଦେଖି କରିଥାଅ ଲୀଳା.... ॥



# କେତେ ଯେ ନାମ ତୁମର

ଆହେ ମହାବାହୁ କାଳିଆ ଠାକୁର
ତୁମେ ତ ଜଗତ ଈଶ୍ୱର
ଖାଲିତ କାଳିଆ ନାମ ନୁହେଁ ତୁମ
କେତେ ଯେ ନାମ ତୁମର ॥ ୧ ॥

ଯେଉଁ ନାମ ଧରି ଡାକିଲେ ଭକ୍ତିରେ
ଶୁଣି ଥାଅ ତତ୍ପର
ଭକତ ଡାକିଲେ ତୁମେ ଖୁସି ହୁଅ
ଶୁଣ ଡାକ ଭକତର ॥ ୨ ॥

ତୁମେ ଖୁସି ହୋଇ ଭକ୍ତକୁ ସର୍ବଦା
କରିଥାଅ କୃପା ଆଶିଷ
ତୁମରି ଆଶିଷ ପାଇଗଲେ ଭକ୍ତ
ଜୀବନ ହୁଏ ତା' ସରସ ॥ ୩ ॥



# ମୋ ହୃଦୟ ଠାକୁର ମୋ ଜୀବନ ଧନ

କେଉଁଠିଥିଲ ପ୍ରଭୁ କେତେବେଳେ ତୁମେ
ଆସିଲ ମୋ' ଜୀବନେ ପଶି
ଦଣ୍ଡେ ନ ଦେଖିଲେ ତୁମକୁ ମୁହିଁ
ଲାଗେ ନାହିଁ ମୋତେ ଖୁସି;

ତୁମେ ମୋ ହୃଦୟ ମୋହରି ମନ
ତୁମେ ମୋର ଜୀବନ ଧନ
ତୁମ ବିନା ବଞ୍ଚି ପାରିବିନି ମୁଁ
ଗୋଟିଏ ଦିନ ମୁହୂର୍ତ୍ତ କ୍ଷଣ

ତୁମେ ମୋ' ହୃଦୟର ପବିତ୍ରତା
ମୋର ଜୀବନର ଗାଥା
ତୁମକୁ ହୃଦୟରେ ରଖି ରଖି
ଲିଭି ଯାଉ ମୋ ଜୀବନ ସତ୍ତା ॥

✦✦✦



# କାଳିଆ ଧନ ମୋର

ଆହେ ଚକାଡୋଳା କାଳିଆ ଧନ ବର
ତୁମକୁ ଦେଖିବାକୁ ଇଚ୍ଛା ହେଉଛି ମୋର,
ଡୋରି ଲଗାଅ ପ୍ରଭୁ ଯିବି ତୁମ ପାଶ
ତୁମ ଡୋରି ନ ଲାଗିଲେ କିଏ ଯିବ ତୁମ ପାଶ ?
ଭକ୍ତର ପ୍ରଭୁ ତୁମେ ଭକ୍ତ ତ ତୁମର
ଭକ୍ତକୁ ଟାଣିନିଅ ତୁମର ପାଶର
ନୀଳ ଚକ୍ରରେ ନେତ ଉଡୁଛି ଫରଫର
ଦୂରୁ ଦେଖିଲେ ପେଟ ପୁରିଯାଏ ମୋର,
ବଡଦାଣ୍ଡର ଧୂଳି ପବିତ୍ରର ଦ୍ୱାର
ପାଦ ଦେଲେ ବଡଦାଣ୍ଡେ ସବୁ ପାପ ହୁଏ ଦୂର
ଏ ଅଧମ ପଶିଅଛି ତୁମ ପାଶେ ଶରଣ
ତୁମ ଦର୍ଶନ ଲଭି ଜୀବନ ମୋ ହେଉ ଧନ୍ୟ ||



# ଲୀଳାମୟ ପ୍ରଭୁ

ପ୍ରଭୁ ତୁମେ ଲୀଳାମୟ
ଲୀଳାର ସାଗର
କେତେ ଲୀଳା ରଚିଛ
ଅନିତ୍ୟ ସଂସାର //୧//

କାହାକୁ ଜଣାନାହିଁ
ଆଦି ଅନ୍ତ ତା'ର
ସମସ୍ତେ ପାଗଳ ଏ
ମାୟାର ସଂସାର //୨//

ମୋର ମୋର କିଛି ନାହିଁ
ସବୁତ ତୁମ୍ଭର
ତୁମ ହାତେ ଗଢ଼ା ଏହି
ସୁନ୍ଦର ସଂସାର //୩//

ଏ ଲୀଳାମୟ ସଂସାରେ
କରୁଅଛ ଲୀଳା
ଏ ଖେଳରେ ମାତି ଜନେ
କରୁଛନ୍ତି ଖେଳା //୪//

ଏହି ଲୀଳା ଅଟେ ଆମ
ବିଚିତ୍ର ସମ୍ଭାର
ବୁଝିହୁଏ ନାହିଁ ତା'ର
ରହସ୍ୟ ବେଭାର //୫//



# ଯା'ରେ ମନ ପବନ

ଯା'ରେ ମନ ପବନ ତୁ
ଉଡି ଉଡି ଉଡି ଯା......
ଶ୍ରୀ କ୍ଷେତ୍ରରେ ପହଞ୍ଚି
କାଳିଆ କୁ ଦେଖିଆ......
କାଳିଆ ରହିଁଛି ନେତ୍ରେ
କରି ତୋତେ ଅପେକ୍ଷା
ଦେଖିଲେ ଖୁସି ହେବ
କରିବନି ଉପେକ୍ଷା......
କେତେ ଆଶିଷ ଦେବ
ନାହିଁ ତାର କଳନା
ତୋ' ମନ ଭକତିରେ
ହୋଇଯିବ ଉନ୍ମନା......
ସ୍ୱ ଦେହରେ ପାରୁନି ମୁଁ
ତା' ପାଶକୁ ଯାଇ
ତୋତେ କହୁଛି ମନ
ଉଡ଼ି ଯାଆ ତହିଁ......
ତୋ'ଭକ୍ତି ଡୋରିରେ
ବାନ୍ଧିବୁ ତାକୁ ଯାଇ
ତୋ ମନ ମନ୍ଦିରେ
ସଦା ଥିବ ସେ ରହି......
ଯାରେ ମନ ପବନ
ଉଡି ଉଡି ଯାଆ......
ଶ୍ରୀ କ୍ଷେତ୍ରରେ ପହଞ୍ଚି
କାଳିଆକୁ ଦେଖିଆ...... ।।



# ଜଗତ ଠାକୁର ଆହେ ଜଗନ୍ନାଥ

ଜଗନ୍ନାଥ ମହାପ୍ରଭୁ ଜଗତ ଠାକୁର
ସାରା ବିଶ୍ୱ ବ୍ରହ୍ମାଣ୍ଡର ତୁମେ ତ ଈଶ୍ୱର ॥

ଆହେ ଜଗନ୍ନାଥ ବୋଲି ଡାକିଲେ ତୁମକୁ
ତୁମେ ଚାଲିଆସ ତୁମ ଭକ୍ତର ପାଶକୁ ॥

ଭକ୍ତ ତ ବନ୍ଧା ତୁମ ସ୍ନେହର ଡୋରିରେ
ତୁମେ ବନ୍ଧାପ୍ରଭୁ ଭକ୍ତର ଭକ୍ତିରେ ॥

ସବୁ ମନକଥା ପ୍ରଭୁ ଜାଣ ସଦାବେଳେ
ଭକ୍ତକୁ ପରୀକ୍ଷା କର ଦୁଃଖର ବେଳେ ॥

ନିରାଶ ନ ହୋଇ ଭକ୍ତ ଡାକେ ଯଦି ତୁମକୁ
କୃପାବର୍ଷା କରିଦିଅ ତୁମରି ଭକ୍ତକୁ ।

ଅକ୍ଲେଶରେ ହରି ନିଅ ସବୁ ଦୁଃଖ ଶୋକ
ଜୀବନରେ ଭରିଦିଅ ଅଶେଷ ଆଶିଷ ॥

ଜଗତର ମହାପ୍ରଭୁ ଜଗତ ତାରଣ
ତୁମ ପାଶେ ପଶିଅଛି ଏ ଅଧମ ଶରଣ ॥



# ପ୍ରଭୁ ଚକାଆଖି

ପ୍ରଭୁ ଚକାଆଖି ତୁମେ ମୋର ସାକ୍ଷୀ
ଦେଖୁଛ ଚକା ନୟନେ
ଜୀବନର ସବୁ ଭଲ ମନ୍ଦ ତୁମେ
ଜାଣୁଅଛ ପ୍ରତିକ୍ଷଣେ ॥୧॥

ଅଧମ ସନ୍ତାନ ଶରଣ ପଶିଛି
ତୁମରି ଚରଣ ତଳେ
ତଥାପି କାହିଁକି ନିରବ ରହିଛ
ଶୁଣୁ ନାହିଁ ଅବହେଳେ ॥୨॥

କେମିତି ଡାକିଲେ ଶୁଣିବ ହେ ପ୍ରଭୁ
ଜାଣି ପାରୁ ନାହିଁ ମୁହିଁ
ହୃଦୟ ମନରେ ଭକ୍ତି ସହକାରେ
ଡାକୁଅଛି ମନ ବାଇ ॥୩॥

ଜୀବନରେ କେବେ ଜାଣି ଶୁଣି ମୁହିଁ
ଭୁଲ୍ ଠିକ୍ କରୁ ନାହିଁ
ଜଣା ଅଜଣାରେ କରୁଥିବା ଭୁଲ୍
କ୍ଷମା କରି ଦିଅଁ ସାଇଁ ॥୪॥

✦✦✦

# ସଭିଙ୍କର ପ୍ରଭୁ

ଭକତର ବନ୍ଧୁ    ଜଗତର ପ୍ରଭୁ
ତୁମେ କରୁଣାର ସିନ୍ଧୁ
ତୁମ ପାଶେ ନାହିଁ    ବଡ ସାନ ଭେଦ
ଧନୀ ଦରିଦ୍ରର ବନ୍ଧୁ ॥୧॥

ସମସ୍ତଙ୍କୁ କର    ଆପଣାର ତୁମେ
କରନାହିଁ ବାଛ ବିଚ୍ଛର
ଭକ୍ତର ଭାବକୁ    ଜାଣିପାର ତୁମେ
ହୃଦ ବ୍ୟଥା କର ଦୂର ॥୨॥

ଅନ୍ତର୍ଯ୍ୟାମୀ ତୁମେ    ସବୁ ଭଲ ମନ୍ଦ
ଶୁଣିପାର ଅନ୍ତରର
କେତେ ଯାତନାରେ    କାଟୁଛି ଜୀବନ
ଏହି ସନ୍ତାନ ତୁମର ॥୩॥

ଅନ୍ତରରରେ ପ୍ରଭୁ    ଡାକିଲେ ତୁମକୁ
ଭକ୍ତ ପାଶେ ଚ୍ଛଲିଆସ
ହରିନିଅ ତୁମେ    ଦୁଃଖ ଓ ଯନ୍ତ୍ରଣା
ନକରି ମନରେ ରୋଷ ॥୪॥

ଢ଼ାଳି ଦିଅ ସୁଖ    ହରି ନିଅ କ୍ଳେଶ
ଯେଉଁ ଭାବେ ଯିଏ ଥାଏ
ଧନୀ ଆଉ ମାନୀ    ଦୁଃଖୀ ଓ ଦରିଦ୍ର
ଯିଏ ତୁମ ଭକ୍ତ ହୁଏ ॥୫॥



# ଅନୁଭବ

କାର୍ତ୍ତିକ ମାସର ପ୍ରଥମ ଦିନରୁ
କରୁଛି କାଳିଆ ଦର୍ଶନ
ହୃଦୟେ ଆଙ୍କୁଛି ତୁମ ଚକା ଆଖି
ଆଖିରେ ଦେଖୁଛି ସପନ ॥ ୧ ॥

କେତେ ଯେ ସପନ ଦେଖୁଅଛି ମୁହିଁ
ତୁମ ଚକା ନେତ୍ର ଚାହିଁ
ସତରେ ବିସ୍ମୟ ତୁମ ଲୀଳା ଖେଳା
କିଛି ବୁଝି ହେଉନାହିଁ ॥ ୨ ॥

ସବୁଦିନ ତୁମ ରୂପ ବଦଳୁଛି
ଧୋକା ଖାଉଛି ଏ ଆଖି
ମନରେ ଆସୁଛି ଭାବ ଅସୁମାରି
ଆଖି ମୋ ଯାଉଛି ଲାଖି ॥୩॥

କେତେବେଳେ ତୁମ ଦିବ୍ୟ ଚାହାଣିରେ
ଉଲ୍ଲସିତ ହୁଏ ମନ
କେତେବେଳେ ତୁମ ନିରସ ମୁହଁରେ
ଦେଖେ ଖାଲି ଅଭିମାନ ॥୪॥

ନିରସ ସରସ ଫରକ ପଡୁନି
ମୋ ହୃଦୟର ଠାକୁର
ଯେମିତି ରୂପରେ ଦେଖି ଦେଲେ ପ୍ରଭୁ
ଦୁଃଖ ଦୂର ହୁଏ ମୋର ॥୫॥



# ବିଶ୍ୱର ଠାକୁର

ତୁମେ ଦାରୁବ୍ରହ୍ମ    ତୁମେ ପୂର୍ଣ୍ଣ ବ୍ରହ୍ମ
ଜଗତର ତୁମେ ନାଥ
ଚାରିଧାମେ ଶ୍ରେଷ୍ଠ    ଶ୍ରୀ ପୁରୁଷୋତ୍ତମ
ନୀଳକନ୍ଦରେ ନିବାସ //୧//

ବିଶ୍ୱର ଠାକୁର    ଆହେ ମହାପ୍ରଭୁ
ତୁମେ ଜଗତର କର୍ତ୍ତା
ସଂସାର ଭାରକୁ    ବହନ କରିଛ
ତୁମେ ତ ବିଶ୍ୱ ନିୟନ୍ତା //୨//

ରତ୍ନ ସିଂହାସନେ    ନୀଳ କନ୍ଦରରେ
ବସି ତୁମେ ପୂଜା ପାଉଛ
ତୁମ ଦିବ୍ୟ ନେତ୍ରେ    ସାରା ସଂସାରକୁ
ଅପଲକ ନେତ୍ରେ ଚାହିଁଛ //୩//

ପାପୀ, ତପି କେତେ    ଆସୁଛନ୍ତି ପାଶେ
ଚକା  ନେତ୍ରରେ ଦେଖୁଛ
ସବୁର ବିଚାର    ତୁମରି ହାତରେ
ଆନନ୍ଦେ ଗ୍ରହଣ କରୁଛ //୪//

ସମୟର ସ୍ରୋତେ    କରୁଅଛ ପ୍ରଭୁ
ସବୁର ହିସାବ ନିକାଶ
ଦେଉଅଛ ତୁମେ    ଭକ୍ତର ପାଉଣା
କାହାକୁ ନକରି ହତାଶ //୫//



# କିଣିନିଅ ଭକ୍ତ ମନ

ପ୍ରଭୁ ନିରାକାର      ତୁମେ ମାୟାଧର
କଳିଯୁଗ କଳା ଠାକୁର
ଅଧାଗଢ଼ା ଦିଅଁ      ଚକା ନୟନ ହେ
ଜଗତର ତୁମେ ଈଶ୍ୱର ।।୧।।

ସବୁଠାରେ ତୁମ      ଚକାଡୋଳା ଭ୍ରମେ
ସାରା ଚଉଦ ଭୁବନ
ରହିଁ ରହି ଥାଅ      ପଲକ ପଡେନା
ଭକ୍ତର ~~ଅଟ~~ ପ୍ରାଣଧନ ।।୨।।

ଚକା ମୁହଁ ତୁମ      ନାଲିଆ ଅଧର
ବଶକରେ ଭକ୍ତଜନ
ଚକା ଚକା ଆଖି      ହସର ଝରଣି
କିଣିନିଏ ଜନ ମନ ।।୩।।

କି ସୁନ୍ଦର ତୁମ      କଳା ବଦନରେ
ଉଇଁଥାଏ ଚକାଜହ୍ନ
ଅପରୂପ ତୁମ      ରୂପ ଲାଳିତ୍ୟରେ
ମୋହିଯାଏ ଏହି ମନ ।।୪।।



# ସବୁ ମହାନ୍

ବଡ ଠାକୁର ହେ      ବଡ ନେତ ତୁମ
ନୀଳଚକ୍ରେ ଫର ଫର
ମହାବାହୁ ତୁମେ      ମଦନ ମୋହନ
ଶ୍ରୀ କ୍ଷେତ୍ରରେ ତୁମ ଘର //୧//

ଶ୍ରୀକ୍ଷେତ୍ରରେ ରହି      ଲୀଳା କରୁଅଛ
ବିଶ୍ୱ ବ୍ରହ୍ମାଣ୍ଡ ତୁମର
ରତ୍ନ ସିଂହାସନେ      ପୂଜା ପାଉଅଁଛ
ତୁମେ ଅଟ ଭକତର //୨//

ଷାଠିଏ ପଉଟି      ଭୋଗ ଖାଉଅଛ
ଆନନ୍ଦ ଉଲ୍ଲାସ ମନେ
ଆନନ୍ଦ ବଜାର      କୁଡୁଆ ଭିତରୁ
କୈବଲ୍ୟ ପାଆନ୍ତି ଜନେ //୩//

ମହାନ୍ ତୁମର      ମହା ପ୍ରସାଦକୁ
ଭକ୍ତିରେ ଖାଇଲେ ଜନ
ମନର ଯନ୍ତ୍ରଣା      ଦୂର ହୋଇଯାଏ
ମିଳିଯାଏ କେତେ ପୁଣ୍ୟ //୪//

ଅସରନ୍ତି ତୁମ      ଗୁଣ ଗାନ ପ୍ରଭୁ
ସବୁ ଅଟେ ମହା ଧର୍ମ
ଯେତେ ଶୁଣିଲେ ବି      ଯେତେ ପଢ଼ିଲେ ବି
ବାକି ରହିଯାଏ କର୍ମ //୫//



# ବଡ଼ଦାଣ୍ଡ

ବଡ ଠାକୁର ହେ ବଡ ଦାଣ୍ଡ ତୁମ
ଶରଧା ବାଲିର ଘର
ମୁକତିର ପଥ ଏହି ବଡ ଦାଣ୍ଡ
ଭକ୍ତ ଜନ ମାନଙ୍କର // ୧ //

ବଡ ଦାଣ୍ଡ ଅଟେ ସବୁଠାରୁ ବଡ
ସଂସାର ଭିତରେ ସାର
ବଡଦାଣ୍ଡ ଧୂଳି ମଥାରେ ବୋଳିଲେ
କେତେ ପାପ ହୁଏ ଦୂର // ୨ //

ଜଗା ବଳିଆର ଦର୍ଶନ ପାଇଁକି
ଭକ୍ତ ଆସେ ଶିରିକ୍ଷେତ୍ର
ବଡଦାଣ୍ଡରେ ସେ ପାଦ ଦେଲାପରେ
ମନ ହୁଏ ବ୍ୟାକୁଳିତ //୩//

ବଡଦାଣ୍ଡ ରେଣୁ ମୁଣ୍ଡରେ ଲଗାଇ
ନୀଳଚକ୍ର କରେ ଦର୍ଶନ
ବାଇଶି ପାହାଚ ଚଢ଼ି ଚଢ଼ି ଯାଏ
ଦେଖିବାକୁ ଭାବବନ୍ଧନ //୪//



# ଦାରୁ ଦେବତା

ଜଗତର ନାଥ ଶ୍ରୀ ଶ୍ରୀ ଜଗନ୍ନାଥ
ଶ୍ରୀ କ୍ଷେତ୍ରେ ରହି ପାଆନ୍ତି ପୂଜା
ସେ ଅଟନ୍ତି ଆମ ଦାରୁ ଦେବତା ଯେ
ବାଛନ୍ତି ନାହିଁ ରାଜା ପ୍ରଜା //୧//

ତାଙ୍କ ନଜରରେ ସବୁତ ସମାନ
ଭକ୍ତକୁ କରନ୍ତି ଆପଣାର
ଭାବ ବିନୋଦିଆ ଠାକୁର ଭକ୍ତର
ସଭିଁଏ ହୁଅନ୍ତି ଏକାକାର //୨//

କରନ୍ତି ନାହିଁ ସେ ଅନ୍ତର ପାନ୍ତର
ବିଶ୍ୱ ବ୍ରହ୍ମାଣ୍ଡ ଦାରୁ ଠାକୁର
ବ୍ରହ୍ମାଣ୍ଡର ସ୍ରଷ୍ଟା ତ୍ରିଭୁବନ ପତି
କୋଟି ହୃଦ ରାଜେଶ୍ୱର //୩//

ଭାବରେ ଡାକିଲେ ଚାଲି ସେ ଆସନ୍ତି
ଭକ୍ତ ସନ୍ତାନର ସମୀପ
ଦୁଃଖ, କଷ୍ଟ ଫେଡି ଓଜାଡି ଦିଅନ୍ତି
କରୁଣାର ବାରି ଅମାପ //୪//



# ଆଖି ଖାଏ ଧୋକା

ହୃଦୟ ଠାକୁର କାଳିଆ ସୁନାରେ
ସତ କହୁଛି ତୋତେ ରେ...
ତୋର ଦରଶନେ ବିମୁଗ୍ଧ ହେଉଛି
ତୋ ଦିବ୍ୟ ରୂପ ଚାହାଣିରେ ॥୧॥

କି ସୁନ୍ଦର ଲୀଳା କରୁଛ ହେ ଖେଳା
ଅଧମ ପାରୁନି ଜାଣି
ନିତ୍ୟ ଦେଖୁଛି ଅଲଗା ପ୍ରକାର
ତୁମ ଶ୍ରୀ ଅଙ୍ଗ ଚାହାଣି ॥୨॥

କେତେବେଳେ ତୁମ ଚକା ଆଖି ଦିଶେ
ପୂର୍ଣ୍ଣିମାର ଚାନ୍ଦ ପରି
କେତେବେଳେ ଦିଶେ ଉଆଁସୀ ନିଶିର
ଟିକି ଟିକି ତାରା ପରି ॥୩॥

କେତେବେଳେ ଦିଶ ଚତୁର୍ଦ୍ଧା ମୂରତି
ଆଖି ରହିଯାଏ ଲାଖି
କେତେବେଳେ ଦିଶ କୁନି କଳାକାହ୍ନୁ
ତୁମେ ଥାଅ ଏକା ସାକ୍ଷୀ ॥୪॥

କାଳିଆରେ ତୋତେ ଏହିପରି ରୂପେ
କରୁଛି ଦର୍ଶନ ନିତି
ଥଟ୍ଟା ପରିହାସ କରନାହିଁ କେହି
ଏହା ତ କାଳିଆ ରୀତି ॥୫॥

# ଭକ୍ତ ଭାବେ ଗ୍ରହଣ କର

ମୋ ହୃଦୟ ଠାକୁର   କାଳିଆ ସାଆନ୍ତ
ଲୋଟୁଛି ମୁଁ ଶ୍ରୀ ପୟରେ
ଏତିକି ମାଗୁଣି   ତୋଳି ଧର ହରି
ତୁମ ଶ୍ରୀ ମହା ବାହୁରେ //୧//
ଅଧମ ସନ୍ତାନ   ଶରଣି ଯାଉଛି
ତୁମ ଭକ୍ତ ହେବା ପାଇଁ
ଭକତ ଭାବରେ   ଗ୍ରହଣ କରେ ହେ
ଜଗତର ଲୀଳା ସାଇଁ //୨//
ଲୋଡା ନାହିଁ ମୋର   ଜୀବନ ଧନ ହେ
ଧନ ରତ୍ନ ଅଳଙ୍କାର
ତୁମରି ଭକତ   ହେବା ପାଇଁ ମୋତେ
ଏତିକି କରୁଣା କର //୩//
କେତେ ଭକ୍ତି ଅଛି   ଜାଣି ନାହିଁ ମୁହିଁ
ଅନ୍ତର ଠାକୁର ମୋର
ଅନ୍ତରର କଥା   ଜାଣିପାର ପ୍ରଭୁ
ଭକ୍ତକୁ ନକର ପର //୪//



# ପ୍ରଭୁଙ୍କର ବାର ମାସରେ ବାର ନାମ

ଶ୍ରୀ ପୁରୁଷୋତ୍ତମ ପ୍ରଭୁ ଲୀଳାମୟ
ତୁମ ଲୀଳା ଅଟେ ବିସ୍ମୟ
ତୁମେ ଯେ ସାକାର ତୁମେ ନିରାକାର
ଅଟ ଯେ ରହସ୍ୟ ମୟ ॥୧॥
ଜାଣି ହୁଏ ନାହିଁ ରହସ୍ୟର ଲୀଳା
ନାହିଁ ତାର ପାରାବାର
ସହସ୍ର ନାମରୁ ପ୍ରକାଶ କରୁଛି
ବାରନାମ ଏଠି ତୁମର ॥୨॥
ବାର ମାସରେ ଯେ ବାର ନାମ ତୁମ
ମାର୍ଗଶୀରେ ଅଟେ 'କେଶବ'
ପଉଷ ମାସରେ ନାମ 'ନାରାୟଣଃ'
ମାଘ ମାସରେ ଯେ 'ମାଧବ'॥୩॥
ଫଗୁଣେ 'ଗୋବିନ୍ଦ' ଚଇତରେ 'ବିଷ୍ଣୁ'
ବୈଶାଖରେ 'ମଧୁସୂଦନ'
ଜ୍ୟେଷ୍ଠ 'ତ୍ରିବିକ୍ରମ' ବ୍ରହ୍ମାଣ୍ଡ ଈଶ୍ୱର
ଆଷାଢ଼ରେ ଅଟ 'ବାମନ' ॥୪॥
ଭାଦ୍ରବ ମାସରେ ଅଟ 'ହୃଷିକେଶ'
ଶ୍ରାବଣରେ ତୁମେ 'ଶ୍ରୀଧର'
ଆଶ୍ୱିନ ମାସରେ 'ପଦ୍ମନାଭ' ପ୍ରଭୁ
କାର୍ତ୍ତିକରେ 'ଦାମୋଦର' ॥୫॥
ଏହିପରି ତୁମ ନାମର ମାହାତ୍ମ୍ୟ
ବାର ମାସରେ ନାମ ବାର।
ତୁମ ନାମ ଧରି ଡାକିଲେ ଭକତ
ଭବ ସାଗରୁ ହୁଏ ପାର ॥୬॥



# ଭକ୍ତି ଅର୍ଘ୍ୟ

ପ୍ରଭୁ ତୁମ ପାଦପଦ୍ମେ ଶରଣ ପଶୁଛି
ତୁମରି ଆଶିଷ ପାଇଁ
ହୃଦୟର ଭକ୍ତି ଅର୍ପଣ କରୁଛି
ଗ୍ରହଣ କରିବ ସାଇଁ //୧//

ମୋ ଭକ୍ତି ଅର୍ଘ୍ୟ ତୋଳି ନିଅ ହରି
କରନାହିଁ ହତାଦର
ତୁମ ପାଦତଳେ ଜାଗାଟିକେ ଦିଅ
କରିନିଅ ଆପଣାର //୨//

ଏତିକି ମାଗୁଣି କରୁଅଛି ମୁହିଁ
ତୁମରି ଚରଣ ତଳେ
ସନ୍ତାନକୁ ତୁମ ଭୁଲିବନି କେବେ
କୃପା ରଖ ସବୁବେଳେ //୩//



# ଶ୍ରୀ କ୍ଷେତ୍ରେ ଲାଗିଛି ଭିଡ଼

ଧରମ ମାସର ଏହି କାର୍ତ୍ତିକରେ
ଶ୍ରୀ କ୍ଷେତ୍ରେ ଲାଗିଛି ଜନ ଗହଳି
କାହିଁ କେତେ ଦୂରୁ ଆସୁଛନ୍ତି ଭକ୍ତ
କାଳିଆ ପାଖରେ କରିବେ ଅଳି ।। ୧ ।।
କାଳିଆ କାଳିଆ ହେ ନୀଳା ଚଳିଆ
ଶ୍ରୀକ୍ଷେତ୍ରରେ ରହି କରୁଛ ଖେଳା
ବଡ ଦାଣ୍ଡରୁ ରତ୍ନବେଦୀ ଯାଏ
ଲାଗିଅଛି ତୁମ କେତେ ମହାଲୀଳା ।। ୨ ।।
ଶହ ଶହ ଭକ୍ତ ମାନଙ୍କର ମେଳି
ନାଟ ମଣ୍ଡପରେ ଲାଗିଛି ଗହଳି
ଜନ ସମୁଦ୍ରର ଠେଲାପେଲାରେ
ମନରେ ଆନନ୍ଦ ଯାଉଛି ଖେଳି ।।୩।।
ବ୍ୟାକୁଳ ମନରେ ଚାଲିଛନ୍ତି ଜନ
ତୁମ ଚକା ନେତ୍ର ଦର୍ଶନ ପାଇଁ
ସଭିଙ୍କ ନଜର ତୁମରି ନେତ୍ରରେ
ଥରୁଟିଏ ମାତ୍ର ଦେଖିବା ପାଇଁ ।।୪।।
ଏହି ଅଦ୍ଭୁତ ଲୀଳା ଅପୂର୍ବ ଦୃଶ୍ୟ
ସମସ୍ତଙ୍କର ମନ ନେଉଛି କିଣି
ଦେଖିଦେଲେ ସେହି ଅପରୂପ ବେଶ
ଆନନ୍ଦରେ ମନ ଯାଉଛି ଭରି ।।୫।।





# ପ୍ରଭୁ କାହିଁକି ବସିଛ ନିରବେ ?

ପ୍ରଭୁ ଚକାଡୋଳା ଶ୍ରୀକ୍ଷେତ୍ରର ମଣି
ରତ୍ନସିଂହାସନେ ବସିଛ
ଭାଇ, ଭଉଣୀଙ୍କୁ ସାଙ୍ଗରେ ଧରିଣ
ଅପଲକ ନେତ୍ରେ ଦେଖୁଛ //୧//
କାହିଁ କେତେ ଦୂରୁ ଆସୁଛନ୍ତି ଭକ୍ତ
ବିଶ୍ୱାସରେ ତୁମ ପାଶ
ଗୁହାରି କରିବେ ଦୁଃଖ ଜଣାଇବେ
ପାଇବାକୁ ତୁମ ଆଶିଷ //୨//
ହେଲେ ପ୍ରଭୁ ତୁମେ ସବୁ ଦେଖୁଅଛ
ନିରବ ରହିଛ କାହିଁକି
ତୁମ ସାମନାରେ ଅନ୍ୟାୟ, ଅନୀତି
ଚାଲିଅଛି କେଉଁ ପାଇଁକି ? //୩//
ଜଗନ୍ନାଥ ଦେଶ ଓଡିଶା ମାଟିର
ନାମ ବଦ୍‌ନାମ ହେଉଛି
ଗର୍ଭଗୃହ ମଧ୍ୟେ ମନ୍ଦିର ଭିତରେ
ଲୁଟ୍‌ପାଟ୍ ନିତି ଚାଲିଛି //୪//
ସବୁ ଦେଖିକରି ନ ଜାଣିଲା ପରି
ଚୁପ୍ ଚାପ୍ ବସି ରହିଛ
ଭକ୍ତଙ୍କ ମନରେ ଦୁଃଖ ଦେଇ ତୁମେ
କି ଲାଭ ପ୍ରଭୁ ପାଉଛ ?//୫//
ଦିନେ ମୁଁ ଦେଖିଲି ଭକତ ବ୍ୟାଗରୁ
ଚୋରି କଲେ ପଣ୍ଡା ଦୁଇ
ପ୍ରଶ୍ନ ଉଠାଇଲି ଗାଳି ମୁଁ ଖାଇଲି
ଅଶ୍ରୁ ଧାର ଗଲା ବହି //୬//
ହାତଟେକି ଦେଲି ନିରବ ରହିଲି
କହିବାକୁ ନଥିଲା ଭାଷା
ବିଚାର ଛାଡିଲି ତୁମରି ହାତରେ
ରଖିଲି ବିଶ୍ୱାସ ଭରସା //୭//
ଏତିକି ମୁଁ ଅଳି କରୁଅଛି ସାଇଁ
ତୁମରି ଚରଣ ତଳେ
ଏ ସବୁ ସମସ୍ୟା ଦୂର କରିନିଅ
ଓଡିଶା ନାଁ ନପଡୁ ତଳେ ।୮।



# ଏକ ପ୍ରଶ୍ନ

ପ୍ରଭୁ ଅନେକ ଦିନରୁ ଏକ ପ୍ରଶ୍ନ
ମୋ ମନରେ ଉଙ୍କି ମାରୁଛି
ଆଜି ତାହାର ଉତ୍ତର ଜାଣିବାକୁ
ଆପଣଙ୍କୁ ସିନା ପଚାରୁଛି,
ତୁମେ ତ ପ୍ରଭୁ ଜଗତର ନାଥ
ଜଗତ ପାଳନ କରୁଛ
ତେବେ ଏତେ ଅନ୍ତର ପାନ୍ତର
ପ୍ରଭୁ କାହିଁକି କରୁଛ ?
ଧନୀ ମାନୀଙ୍କୁ ରଖିଲ ସବୁ
ନେଇ ବିଦେଶ ମାଟିରେ
ଦରିଦ୍ର ଦୁଃଖୀଙ୍କୁ ରଖିଲ
ତୁମେ ଆମ ଓଡିଶାରେ
ସବୁଠୁ ଦରିଦ୍ର ରାଜ୍ୟଭାବେ ଏବେ
ଓଡିଶା ହେଉଛି ଗଣା
ଏହା କଣ ପ୍ରଭୁ ତୁମର ଇଚ୍ଛା
ଓଡିଶା ପାଇଁ କରୁଣା !!!



# ହେ ଈଶ୍ୱର

ହେ ଈଶ୍ୱର !

ତୁମେ ଅଛ ବୋଲି କିଏ ନଜାଣିଛି
ହେଲେ ତୁମକୁ କିଏ କଣ କେବେ ସ୍ୱ ଚକ୍ଷୁରେ ଦେଖିଛି ?
କେବଳ ଅନୁଭବ କରୁଛି, ଅନୁଭୂତି ପାଉଛି
ତୁମର କାଠ, ପଥର ମୂର୍ତ୍ତି ସାମନାରେ ଥାଇ
ତା ଭିତରେ ତୁମକୁ ଦେଖୁଛି ଏବଂ
ତା' ମନର କଥା ବଖାଣୁଛି
ତା' ହୃଦୟର ଆବେଗକୁ ତୁମ ପାଖରେ
ଅତି ବିନମ୍ର ସହକାରେ ବ୍ୟକ୍ତ କରୁଛି,
କିନ୍ତୁ; ତୁମେ ନୀରବ ନିର୍ବାକ ନାହିଁ ତୁମ ପ୍ରତିକ୍ରିୟା
ହେଲେ ଏ ମନ କହୁଛି ତୁମେ ସବୁ ଶୁଣୁଛ, ସବୁ ଜାଣୁଛ
ଦୁଃଖରେ, ସୁଖରେ ବିପଦେ ଆପଦେ
ସାଥ୍ ଦେଉଛ ଆଖି ସାମନାରେ ସିନା
ଦଣ୍ଡାୟମାନ ନୁହେଁ ପ୍ରଭୁ ତୁମେ
ହେଲେ.... ତୁମ ଅଦୃଶ୍ୟର ହାତ ସବୁ କରୁଛି
ତୁମ ଦିବ୍ୟନେତ୍ର ସବୁ ଦେଖୁଛି
ତୁମେ କେଉଁଠି ନାହଁ ପ୍ରଭୁ
ତୁମେ ସବୁଠି ଅଛ ତୁମେ ସବୁଠି ଅଛ
ଆକାଶରେ,ଜଳରେ, ବୃକ୍ଷରେ ଓ ଶୂନ୍ୟରେ
ଜଗତ ଜୀବର ଆତ୍ମାରେ, ମୋ ଚକ୍ଷୁର ଅଶ୍ରୁବାରିରେ.....
ସବୁଠି ତୁମେ ସବୁଠି ତୁମେ.........!!!

✦✦✦



# ଛଦ୍ମ ରୂପେ ପାଇଛି ଦର୍ଶନ

ହେ ପ୍ରଭୁ ସତରେ ତୁମେ ଅଛ ବୋଲି
ଅନୁଭବ କରେ ପ୍ରତି ମୁହୂର୍ତ୍ତରେ
ଅନେକ ଥର ଦର୍ଶନ ପାଇଛି
ତୁମକୁ କେତେ ଛଦ୍ମ ରୂପରେ,
ତଥାପି ଏ ଅବୁଝା ମନ କାହିଁକି କେଜାଣି
ସବୁବେଳେ ମନ କରେ ଦେଖିବାକୁ
ତୁମର ସେ ଦିବ୍ୟକାନ୍ତି ମାନବ ରୂପକୁ,
ସତରେ ପ୍ରଭୁ ସାମ୍ନାରେ ଉଭା ହୁଅନ୍ତନି !
ହାତରେ ଶଂଖ,ଚକ୍ର, ଗଦା, ପଦ୍ମ ଧରି
ଉଦ୍‌ଭାସିତ ଦିବ୍ୟ ସୁନ୍ଦର ରୂପରେ....
ଏ ସାଧାରଣ ମଣିଷ କେତେ ଯେ ଝୁରେଁ
ତୁମକୁ ତୁମର ସେ ରୂପ ଦର୍ଶନକୁ
ଜାଣି ପାରିଲେ ବି ପ୍ରଭୁ
ତୁମେ କେବେ ବି ଦେବନି ଦେଖା....
କାହିଁକି ନା ଏତ କଳିଯୁଗର କଥା.... ||







# ସନ୍ତାନ କରୁଛି ଗୁହାରି

ଆହେ ଦୟାମୟ ଦୀନ ଦୁଃଖ ହାରି
ସନ୍ତାନ ତୁମର କରୁଛି ଅଳି
ସନ୍ତାନଙ୍କୁ ତୁମ ସୁପଥରେ ନେଇ
ସୁନ୍ଦର ସଂସାର ଗଢ଼ ତୋଳି //୧//
ହିଂସା,ଦ୍ୱେଷ,କ୍ରୋଧ ମୋର ହୃଦୟରୁ
ପ୍ରଭୁ ନିଅ ତୁମେ ହରି
ବୁଦ୍ଧି,ବିଦ୍ୟା ଜ୍ଞାନ ଭଲ, କର୍ମ ଗୁଣ
ହୃଦେ ମୋର ଯାଉ ପୁରି //୨//
ଦୀନ,ଦୁଃଖୀଜନ ସେବା କରିବାକୁ
ଶକ୍ତି ସାମର୍ଥ୍ୟ ଦିଅ ଭରି
ସମାଜର ସେବା କରି କରି ମୁହିଁ
ଆନନ୍ଦରେ ଦିନ ଯାଉ ସରି //୩//
ନିଜ, ଦୁଃଖ,କଷ୍ଟ ବଳି ମୁଁ ପକାଇ
ସେବା କରିବି ଜଗତ ଜନ
ଦୁଃଖ, କରିବିନି ସେବା କରି କରି
ଚାଲିଗଲେ ମୋର ଏ ଜୀବନ //୪//
ଏତିକି ମାଗୁଣି ତୁମ ଚରଣରେ
କରୁଅଛି ଅଧମ ଅଜ୍ଞାନ
ତୁମ ଆଶିଷରେ ଆଗକୁ ବଢ଼ିବି
ଦିଅ ମୋତେ ଦିବ୍ୟ ଜ୍ଞାନ
ଏହି ଦିବ୍ୟଜ୍ଞାନ ବ୍ୟବହାର କରି
ସେବା କରିବି ମୁଁ ଜନ //୫//



# ତୁମ ନେତ୍ରରେ
# ମୋ ନେତ୍ର ମିଶିଗଲେ....

ହେ ଚକାନୟନ କାଳିଆ ସାଆନ୍ତ
ତୁମ ନେତ୍ରରେ
ମୋ ନେତ୍ର ମିଶିଗଲେ,
ହୃଦୟେ ଆନନ୍ଦେ ହୁଏ ପୁଲକିତ
ତୁମର ସାନ୍ନିଧ ପାଇବାକୁ
ମନ ହୁଏ ବଡ ବ୍ୟାକୁଳିତ,
ସତରେ ପ୍ରଭୁ ତୁମ ନେତ୍ରର ପଲକ
ଥରେ ପଡିଯା'ନ୍ତା କି ସତେ !
ଭାବି ନିଅନ୍ତି ମୁଁ ତୁମର ସାନ୍ନିଧ
ମିଳିଗଲା ବୋଲି ମୋତେ ।।



# ପ୍ରଭୁଙ୍କୁ ଅଳି

ବୃକ୍ଷଟିଏ ମୋତେ କରିଦିଅ ପ୍ରଭୁ
ସାରା ଦୁନିଆକୁ ଖାଦ୍ୟ ମୁଁ ଦେବି
ଫୁଲଟିଏ ମୋତେ କରିଦିଅ ପ୍ରଭୁ
ତୁମ ପାଦ ତଳେ ସମର୍ପି ଯିବି ॥
ସଳିତାଟିଏ କରିଦିଅ ପ୍ରଭୁ
ଦୀପରେ ରହି ମୁଁ ଜଳୁଥିବି
ଦୀପ ଶିଖାଟିଏ କରିଦିଅ ପ୍ରଭୁ
ଅନ୍ଧାରକୁ ଦୂର କରୁଥିବି ॥
ତୁଳସୀଟିଏ କରିଦିଅ ପ୍ରଭୁ
ତୁମ ପ୍ରସାଦରେ ଲାଗି ହୋଇବି
ପଦ୍ମଟିଏ ମୋତେ କରିଦିଅ ପ୍ରଭୁ
ଲକ୍ଷ୍ମୀ ମା'ଙ୍କ ପ୍ରିୟ ମୁଁ ହେବି ॥
ବେଲ ପତ୍ରଟିଏ କରିଦିଅ ମୋତେ
ଶିବଙ୍କ ମଥାରେ ପୂଜା ପାଇବି
ମନ୍ଦାରଟିଏ ମୋତେ କରିଦିଅ ପ୍ରଭୁ
ମା' ମଙ୍ଗଳାଙ୍କ ଗଳେ ଝୁଲିବି ॥
ଗୋଲାପଟିଏ ମୋତେ କରିଦିଅ ପ୍ରଭୁ
ପ୍ରେମର ପ୍ରତୀକ ମୁହିଁ ସାଜିବି
ଶ୍ରୀ ଫଳଟିଏ କରିଦିଅ ମୋତେ
ସବୁ ଶୁଭକାମରେ ଲୋଡା ପଡିବି ॥
ଜହ୍ନଟିଏ ମୋତେ କରିଦିଅ ପ୍ରଭୁ
ସାରା ଦୁନିଆକୁ ଆଲୋକ ଦେବି ॥



# ଆହେ ଦୟାମୟ ହରି

ଆହେ ଦୟାମୟ ହରି,
ତୁମ ନାମ ଧରି ଧରି
ଦିନ ଯାଉ ମୋ ସରି,
ସଂସାର ଡଙ୍ଗାରେ ବସାଇ ଦେଇଛ
ଭବ ସାଗରରୁ ପାରି ହେବା ପାଇଁ,
କାତ ତୁମେ ଧରିଅଛ
ତୁମେ କାତଧରି ଡଙ୍ଗା ବାହି ନେଲେ
ବିପଦ ଆସିବ ନାହିଁ କେବେ ହେଲେ,
ଏହି ବିଶ୍ୱାସରେ ଚାଲିଛି ମୁଁ ବାଟ
ପ୍ରଭୁ ତୁମରି କରୁଣା ଥାଉ ଅଶେଷ
ପ୍ରଭୁ ତୁମରି କରୁଣା ଥାଉ ଅଶେଷ ॥ (ଘୋଷା)

(ଭାଗ-୨)

ମୋ ପ୍ରଭୁ ଅଛନ୍ତି ମୋ ହୃଦୟରେ
ମୁଁ ଅଛି ସଦା ତାଙ୍କ ନଜରରେ
କିଛି ତ ନାହିଁ ଡର, ଭୟ ମୋର
ପ୍ରଭୁ ଅଛନ୍ତି ସଦା ମୋ ପାଖର,
ଏହି ବିଶ୍ୱାସ ଭକ୍ତି ଭାବନାକୁ
ମନ ହୃଦୟ କନ୍ଦରେ ଧରି
ତୁମରି ନାମ ଭଜି ଭଜି
ଦିନ ଯାଉ ମୋ ସରି ॥







# ମୋ କାଳିଆ ଧନ

ନୟନେ ଦେଖୁଛି ତୁମ ଚକା ମୁହଁ
ଆହେ ମୋ କାଳିଆ ଧନ
ତୁମରି ପାଖରେ ବନ୍ଧା ପଡିଛି ଏ
ହୃଦୟ ଶରୀର ମନ //୧//

କିପରି କାଟୁଛି ଅଲୋଡା ଜୀବନ
ସପନର ଢେଉ ତଳେ
ସ୍ୱପ୍ନ ଦେଖି ଦେଖି ଦିନ ମୋ ବିତୁଛି
ରହିବାକୁ ବାହୁତଳେ //୨//

ଦିନ ଗଡିଯିବ ରାତି ପାହିଯିବ
ଅଢ଼େଇ ଦିନର ସଂସାର
ଅତିଥିର ବାସ ଏହି ସଂସାରରେ
ଚାଲିଯିବ ପ୍ରାଣ ମୋର //୩//

କାଳିଆ ଧନ ମୋ କରୁଛି ମୁଁ ଅଳି
ଶୁଣ ଡାକ ମୋର ବାରେ
ମୋର ସପନକୁ ପୁରା କରିଦିଅ
ନ ଦିଅ ଦୁଃଖ ମନରେ //୪//



# ଚାରି ଯୁଗର ଠାକୁର

ଲୀଳାମୟ ପ୍ରଭୁ ଶ୍ରୀ ପୁରୁଷୋତ୍ତମ
ତୁମ ରୂପ କି ! ସୁନ୍ଦର
ସେ' ମାଧୁର୍ଯ୍ୟମୟ ରୂପ ଦେଖିଦେଲେ
ମନ ତୃପ୍ତ ହୁଏ ମୋର //୧//

ଚାରୋଟି ଯୁଗରେ ଚାରି ଅବତାରେ
ସୃଷ୍ଟି କଲ ନିଜ ରୂପ
କେତେ ଶୋଭା ତୁମ ରୂପ ରଙ୍ଗ ଠାଣୀ
ସାରା ବ୍ରହ୍ମାଣ୍ଡର ନୃପ //୨//

ତ୍ରେତୟାରେ ରାମ ଦ୍ୱାପରରେ କୃଷ୍ଣ
ସତ୍ୟରେ ନୃସିଂହ ନାଥ
କଳିଯୁଗରେ ତ ଦାରୁ ମୁରାରୀ ଯେ
ସ୍ୱୟଂ ଶ୍ରୀ ଶ୍ରୀ ଜଗନ୍ନାଥ //୩//

ଏହି ରୂପେ ତୁମେ ଲୀଳା ରଚି କରି
ଭକ୍ତ ହୃଦୟେ ବସିଛ
ଅଦୃଶ୍ୟରେ ରହି ଅନୁଭବ ଦେଇ
ଜଗତକୁ ତୁମେ ପାଳୁଛ //୪//

ତୁମରି ମହିମା କେ କହି ପାରିବ
ତୁମେ ବିନା ନୁହେଁ ଧରା
ବିଦ୍ୟମାନ ତୁମେ ଜଗତ ଜନରେ
ସବୁ ଚାଲେ ତୁମ ଦ୍ୱାରା //୫//



# ମୋ ମନ ମନ୍ଦିର

ମୋ ଚକା ଠାକୁର ମୋ ମନ ମନ୍ଦିର
ମୋର ସାଥେ ଥାଅ ରହି
ତୁମରି ଆଖିରେ ଦେଖୁଛି ସପନ
ଅସୁମାରି ଭାବେ ମୁହିଁ ॥୧॥

ଖୋଲିଲେ ମୁଁ ଆଖି ବୁଜିଲେ ମୁଁ ଆଖି
ତୁମ ଚକା ନେତ୍ର ଦିଶେ .
ସବୁ ଦୁଃଖ ସୁଖ ଓଜାଡି ଦିଏ ମୁଁ
ତୁମରି ଚରଣ ପାଶେ ॥୨॥

ମୋ' ସଂସାରର ସବୁ ଦାୟିତ୍ୱକୁ
ଟେକିଅଛି ତୁମ ହାତେ
ସେଥିପାଇଁ ମୋର ଚିନ୍ତା ନାହିଁ ପ୍ରଭୁ
ତୁମେ ଅଛ ମୋର ସାଥେ ॥୩॥

ଯାହା ତ କରିବ ସବୁରି ମଙ୍ଗଳ
ରଖିଛି ଏହି ବିଶ୍ୱାସ
ତୁମରି ନାମକୁ ଭଜୁଥିବି ମୁହିଁ
ଥିବାଯାଏ ମୋ ନିଃଶ୍ୱାସ ॥୪॥



# ସବୁଠାରେ ଥାଅ ରହି

ରହସ୍ୟମୟ ଏ ସୁନ୍ଦର ସଂସାର
'ପ୍ରଭୁ' ହାତେ ଗଢା ଏହି
ତୁମେ ଅଟ ବ୍ରହ୍ମ ତୁମେ ଯେ ସର୍ବସ୍ୱ
ସବୁଠାରେ ଥାଅ ରହି //୧//
ତୁମ ଚକା ଆଖି ସବୁ ଅଟେ ସାକ୍ଷୀ
ସଂସାରର ପ୍ରାଣଧାରୀ
ତୁମ ନାମ ମୁଖେ ସଦା ଧରି ଧରି
ଏ ଜୀବନ ଯାଉ ସରି //୨//
ଦୁଃଖ ଦେଉଅଛ ସୁଖ ଦେଉଅଛ
ସବୁକୁ ଆଧାର କରି
ବଞ୍ଚିଛି ଜୀବନ ହାରିଯାଇ ନାହିଁ
ହୃଦୟେ ରଖିଛି ଧରି //୩//
ତୁମେ ମୋର ଆତ୍ମା ତୁମେ ମୋର ପ୍ରାଣ
ଏ କଥା ଭୁଲିବି ନାହିଁ
ଯେବେ ଏ ଘଟରୁ ଛାଡି ଚାଲିଯିବ
ହଜିବ ଜୀବନ ତହିଁ //୪//
ଏପରି ଜୀବନ ଗଢ଼ିଅଛ ପ୍ରଭୁ
ସକଳ ଘଟରେ ରହି
ସବୁ ପ୍ରାଣୀ ତୁମ ଆୟତ୍ତ ଅଧୀନ
ଏକଥା ଅଜଣା ନାହିଁ //୫//



# ତୁମେ ମୋ ବିଶ୍ୱାସ ଭରସା

ଅଖଣ୍ଡ ବିଶ୍ୱାସ　　　　ରଖିଅଛି ମୁହିଁ
ଚାଲିଛି ଜୀବନ ପଥ
ତୁମେ ମୋ' ବିଶ୍ୱାସ　　　　ତୁମେ ମୋ ଭରସା
ତୁମେ ମୋର ଚଲାପଥ //୧//

ତୁମ ବିନା ମୋର　　　　ଜୀବନର ମୂଲ୍ୟ
ନାହିଁ ତା'ର ମାନେ କିଛି
ତୁମକୁ ସାଥୀରେ　　　　ଧରି ଚାଲୁଥିବି
ଏତିକି ମୁଁ ଜାଣିଅଛି //୨//

ତୁମେ ଛାଡି ଦେଲେ　　　　ଅଧାବାଟେ ହାତ
ହୋଇଯିବି ମୁହିଁ ସ୍ଥିର
ଜୀବନର ମୂଲ୍ୟ　　　　ହଜିଯିବ ମୋର
ପାଇବେନି କେହି ଟେର //୩//

ମିଛ ଓ ମାୟାର　　　　ଏହି ସଂସାରରେ
ସବୁ ଛଳନା କପଟ
ବିଶ୍ୱାସର ଯୋଗ୍ୟ　　　　କେହି ନୁହେଁ ଏଠି
ଦେଖା'ନ୍ତି ନିରାଶ ବାଟ //୪//

ତୁମେ ହିଁ ବିଶ୍ୱାସ　　　　ତୁମେ ହିଁ ଭରସା
ତୁମେ ହିଁ ମୋର ଜୀବନ
ତୁମେ ଥିଲେ ସାଥେ　　　　ଭାଙ୍ଗି ପଡିବିନି
ପୁରା ହୋଇବ ସପନ
ତୁମକୁ ହୃଦୟେ　　　　ରଖି ଚାଲୁଥିବି
ଭକ୍ତି ଭାବେ ରଖି ମନ //୫//



# ଭରସାର ବାଡ଼ି

ଅନ୍ଧାର ରାତିରେ ହଜାଇ ଦେଇଛି
ଭରସାର ବାଡିଟିଏ
ଖୋଜି ଖୋଜି ମୁହିଁ ହେଲେଣି ନୟାନ୍ତ
ପାଉନାହିଁ ତାକୁ କିଏ ।।୧।।
କିପରି ଚାଲିବି ଜୀବନର ପଥ
କିଏ ହେବ ମୋତେ ସାହା
ତୁମରି ଆଖିରେ ଦେଖୁଛି ସପନ
ପାଇବାକୁ ତୁମ ରାହା ।।୨।।
ତୁମେ ମୋ ବିଶ୍ୱାସ ଭରସାର ବାଡି
କେବେ ତୁମେ ଭୁଲନାହିଁ
ତୁମେ ମୋ ହୃଦୟ ମନର ଦେବତା
ଚାଲୁଥିବି ପଥ ମୁହିଁ ।।୩।।
ହାତ ଧରି ପଥ ଚାଲୁଥିଲେ ମୋର
ଝୁଣ୍ଟି ପଡିବିନି କେବେ
ଝୁଣ୍ଟି ପଡିଲେ ବି ହାରିବିନି ମୁହିଁ
ଧରି ଥିବ ହାତ ଯେବେ ।।୪।।
ସଂକଳ୍ପ ନେଇଛି ତୁମରି ସାଥୀରେ
ବିତାଇବି ବାକି ଜୀବନ
ତୁମେ ମୋର ପ୍ରାଣ ତୁମେ ମୋର ଆତ୍ମା
ତୁମେ ମୋ ଜୀବନ ଧନ ।।୫।।



# କର୍ମର ଜଞ୍ଜାଳେ....

କର୍ମର ଜଞ୍ଜାଳେ ପ୍ରତିକ୍ଷଣ ଖୋଜେ
ଏ ମନରେ ତୁମ ସାନ୍ନିଧ୍ୟ
ତୁମର ସାନ୍ନିଧ୍ୟ ପାଇବାକୁ ମନ
ହୁଏ ବ୍ୟଗ୍ର ପ୍ରତି ମୁହୂର୍ତ୍ତ ।।୧।।

ନିରନ୍ତର ସଦା ହେଉଥାଏ ଝୁରି
ତୁମକୁ ହୃଦୟ କନ୍ଦରେ ଧରି
ମନର ବେଦନା ଯନ୍ତ୍ରଣା ଦାୟକ
ତାକୁ ନିଅ ପ୍ରଭୁ ହରି ।।୨।।

ମନ ହୃଦୟରେ ସଦା ଖୋଜୁଥାଏ
ଶୁଣିବାକୁ ମଧୁ ବାଣୀ
ତୁମରି କରୁଣା ବରଷିଣ ଯାଉ
ଅଜ୍ଞାନର ମନ ଜାଣି ।।୩।।

ତୁମରି କରୁଣା ବାରିଧିରେ ମୋର
ଦୁଃଖ ଯାଉ ସବୁ ଟଳି
ତୁମରି ନାମକୁ ସଦା ଜପି ଜପି
ଜୀବନ ଯାଉ ମୋ ଚଳି ।।୪।।



# ଅଶ୍ରୁଳ ଆବେଗ

**ଆହେ ମହାବାହୁ....**

କାହିଁକି ଦେଉଛ ଏତେ ଦୁଃଖ ତୁମେ
ପେଟ ଘଖଣ୍ଡକ ପାଇଁ
ତୁମ ବଡ ଦାଣ୍ଡେ ହାତ ପାତୁଅଛି
ଭିକାରୀଟି ସାଜି ମୁହିଁ ॥ ୧ ॥

ରତ୍ନ ସିଂହାସନ ପାଖକୁ ଯାଇ ମୁଁ
ପାରୁନି ଦର୍ଶନ କରି
ଏହିଠାରେ ପଡି ଦୁଃଖ ଜଣାଉଛି
ଆଖିରୁ ଲୁହ ଝାରି ॥ ୨ ॥

ଆହେ ଦୁଃଖ ହାରି କରୁଣା ବିହାରୀ
କି କର୍ମ କରିଛି ମୁହିଁ !
ଏତେବଡ ଦଣ୍ଡ ଦେଉଅଛ ମୋତେ
ହେ'ମୋର ଜଗତ ସାଇଁ ॥ ୩ ॥

ମୋର ଦୁଃଖ କ'ଣ ଫେଡିବନି ପ୍ରଭୁ
ଏ ଜୀବନ ଥିବାଯାଏ
ଭିକ୍ଷା ଥାଳ ଧରି ଭିକ୍ଷା ମାଗିବା ଯେ
ବଡ ଦୁଃଖ ମୋତେ ଦିଏ ॥ ୪ ॥

ଅକର୍ମା ହୋଇଣ ପଡ଼ିଅଛି ମୁହିଁ
କର୍ମ କରିବାକୁ ନାହିଁ ଶକ୍ତି
ପ୍ରଭୁ ଅନ୍ତରରୁ ଡାକୁଛି ତୁମକୁ
ଏ ଭବସାଗରୁ ଦିଅ ମୁକ୍ତି ॥ ୫ ॥

ଅଙ୍ଗେ କରିଥିବା ସବୁ ପାପ ମୋର
ବଡ ଦାଣ୍ଡେ ଯାଉ ଧୋଇ
ଜନ୍ମ, ଜନ୍ମ ପାଇଁ ଏ ଦୁଃଖୀ ଜନମ
ଦେବ ନାହିଁ ପ୍ରଭୁ ସାଇଁ ॥ ୬ ॥



# ବିଶ୍ୱାସରେ ଭଗବାନ୍

ଭକତର ବନ୍ଧୁ ଆହେ କୃପାସିନ୍ଧୁ
ଭକତ ହୃଦୟେ ଥାଅ
ଭକ୍ତିରେ ଡାକିଲେ ଭକତ ତୁମକୁ
ଦୁଃଖ ସବୁ ତା'ର ନିଅ ॥୧॥
ତୁମ ଅଦୃଶ୍ୟର କୃପାବାରି ଦେଇ
ଭିଜାଇ ଦିଅ ଭକ୍ତକୁ
ଭକ୍ତ ଭିଜିଗଲେ ଆଶିଷ ବାରିରେ
ଖୁସି ହୁଅ ଦେଖି ତାକୁ ॥୨॥
ଭକ୍ତର ଆନନ୍ଦ କହିଲେ ନ ସରେ
ଭିଜିଗଲେ କୃପା ବାରୀରେ
ସବୁ ଦୁଃଖ ତା'ର ହରି ନେଇଯାଅ
କୋଳେଇ ତୁମ କୋଳରେ ॥୩॥
ସ୍ୱଦେହରେ ସିନା ଆସନାହିଁ ପ୍ରଭୁ
ଅଦୃଶ୍ୟରେ ସବୁ କର
ଏ କଥାକୁ ଯିଏ ଅନ୍ତରେ ବୁଝିଛି
ଦିଅ ତାହା ପାଇଁ ବର ॥୪॥
ବିଶ୍ୱାସ ଭରସା ଭକ୍ତି ଓ ଭାବନା
କର୍ମ ହିଁ ମଣିଷ ଜୀବନ
ସତ୍ କର୍ମ କରି ବିଶ୍ୱାସ ରଖିଲେ
ପାଖେ ରୁହନ୍ତି ଭଗବାନ୍ ॥୫॥



# ବଡ଼ ସାନ ସବୁ ତୁମ ଭକ୍ତ

ଶ୍ରୀ କ୍ଷେତ୍ରର ନାଥ କାଳିଆ ଠାକୁର
ରତ୍ନବେଦୀ ପରେ ବସିଛ
କାଳିଆ ମୁହଁରେ ଗୋଲିଆ ଆଖିରେ
କେତେ ସୁନ୍ଦର ଯେ ଦିଶୁଛ ॥୧॥
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରିଣ
କେତେ ଲୀଳା ତୁମେ ରଚିଛ
ଭକ୍ତଙ୍କୁ ଦେଖିଲେ ଖୁସି ହୋଇ ତୁମେ
ମୁରୁକି ମୁରୁକି ହସୁଛ ॥୨॥
ଭକ୍ତର ବିକଳ ଠେଲା ପେଲା ଦେଖି
ବହୁତ ଆନନ୍ଦ ପାଉଛ
ଭକ୍ତ ତୁମ ରୂପ କିପରି ଦେଖୁଛି
କଣେଇ କଣେଇ ଚାହୁଁଛ ॥୩॥
କେତେ ଭକ୍ତ କେତେ ଗୁହାରି କରନ୍ତି
ନିରବ ନିଶ୍ଚଳେ ଶୁଣୁଛ
ସବୁ ଭାବିଚିନ୍ତି ଠିକଣା ସମୟେ
ଭକ୍ତକୁ ଆଶିଷ କରୁଛ ॥୪॥
ଧନୀ ଠୁ ଗରିବ ସବୁ ତ ସମାନ
ସମସ୍ତଙ୍କୁ ଭଲ ପାଉଛ
ତୁମ ନଜରରେ ବଡ଼ ସାନ ନାହିଁ
ଭକ୍ତର ହୃଦୟ ଚିହ୍ନୁଛ ॥୫॥
ଭକ୍ତ ଯେ ତୁମକୁ ଭକ୍ତିରେ ଡ଼ାକିଲେ
ତାହାର ପାଶକୁ ଆସୁଛ
ମନ କଥା ବୁଝି ତାହାର ଦୁଃଖକୁ
ସବୁ ତ ହରଣ କରୁଛ ॥୬॥
ବଡ଼ ଠାକୁର ବଡ଼ ମନ ତୁମ
ସଂସାରକୁ ଯତ୍ନେ ପାଳୁଛ
ବିପଦ ଆପଦୁ ଉଦ୍ଧରିଣ ତୁମେ
ଜଗତକୁ ଧରି ରଖିଛ ॥୭॥



# ଲାଗିଲା ଡ଼ୋରି

ବହୁତ ଅପେକ୍ଷା ପରେ ଲାଗିଲା ତୋ' ଡ଼ୋରି
ଆସିଥିଲି କାଳିଆ ତୋ ଦରଶନ କରି ।।

ତୋ' ଦରଶନେ ମୁଁ ଯେ, ଚକା ମୁହଁ ଦେଖିଲି
ତୋ' ଅପଲକ ନେତ୍ରେ ମୋ' ନେତ୍ର ମିଶାଇଲି ।।

ଆନନ୍ଦରେ ପୁରିଗଲା ହୃଦ ଆତ୍ମା ମୋର
ଅପେକ୍ଷାର ଅନ୍ତ ହେଲା ଅନେକ ଦିନର ।।

ଛଡ଼ା ତୁଳସୀ ପାଇ ହେଲି ଆନନ୍ଦ ମୁହିଁ
ମିଠା ପ୍ରସାଦ ଖାଇ ଯିବି ହରଷ ହୋଇ ।।

ଆସିଥିଲି କାଳିଆ ତୋ' ଦରଶନ କରି
ତୋତେ ଦରଶନ ସାରି ଯାଉଛି ମୁଁ ଫେରି ।।

ତୋତେ ଛାଡ଼ି ଯିବାକୁ ମୋ ମନ ବଳୁନାହିଁ
ବାର ବାର ଦେଖିବାକୁ ଇଚ୍ଛା ହେଉ ଥାଇ ।।

କରୁଛି ଅଳି ମୁହିଁ କୃପା କରିବୁ ତୁହିଁ
ପୁଣି ଲାଗିଲେ ଡ଼ୋରି ଆସିବି ପାଶେ ମୁହିଁ ।।



# ସଂସାରେ ଭରୁ ଶାନ୍ତି

ଭକତିରେ ପ୍ରଭୁ ଡାକୁଅଛି ମୁହିଁ
ଭକ୍ତିର ଆଞ୍ଜୁଳି ଟେକି
ସାଦରେ ଗ୍ରହଣ କରିନିଅ ପ୍ରଭୁ
କହୁଛି ସନ୍ତାନ ଟିକି //୧//
ମନର ଭାବକୁ ବ୍ୟକ୍ତ କରୁଅଛି
ଜଣାଉଛି ମୋର ଦୁଃଖ
ଏ ଭବ ସଂସାରୁ କ୍ଳେଶ ହରି ନିଅ
ଭରିଦିଅ ଶାନ୍ତି ସୁଖ //୨//
କେତେ ଚାଲିଅଛି ଦୁର୍ନୀତି, ଅନୀତି
ଅସହ୍ୟ ହେଲାଣି ଧରା
ମଉନେ ବସିଛ କାହିଁପାଇଁ ପ୍ରଭୁ
ଦିଅ ନାହିଁ ତୁମେ ଧରା //୩//
କେବେ ହେବ ଅନ୍ତ ଅସହ୍ୟ ବେଦନା
ବିନାଶିବ ଭୟ ଭ୍ରାନ୍ତି
ତୁମରି ଆଶିଷେ ଭରିଯିବ ମହୀ
ପ୍ରଜ୍ୱଳିତ ହେବ ଶାନ୍ତି //୪//
ଏତିକି ମାଗୁଣି ଟେକି ଧର ହରି
କୁଣ୍ଠା କର ନାହିଁ ଆଉ
ତୁମେ ନ ରହିଁଲେ ଶାନ୍ତି ଫେରିବନି
ତୁମ ନାମେ ଦିନ ଯାଉ //୫//



# ଭାବର ଠାକୁର

ମୋ' ଭାବର ଠାକୁର, କାଳିଆ ସୁନାରେ....
ସତ କହୁଛି ମୁଁ ତୋତେରେ....
ତୋ'ର ଦରଶନେ ବିମୁଗ୍ଧ ହୁଏ ମୁଁ
ଖୋଜେ ତୋତେ ଦାରୁ ମୂର୍ତ୍ତିରେ...
କଣେଇ, କଣେଇ, ଚାହିଁ ରହିଥାଉ
ଧରାପଡୁ ମୋର ଆଖିରେ...
କେତେ କଥା ତୋତେ କହିବାକୁ ମୋର
ଇଚ୍ଛା ହେଉଥାଏ ଭାରିରେ...
କହି ପାରେନି ମୁଁ ଭାବି ଭାବି ରହେ
ଚାହିଁ ବିହ୍ୱୋଳିତ ତୋତେରେ.....
ସବୁ ବୁଝୁ ମୋର ମନର କଥା ତୁ
ମୋ ଅନ୍ତର କଥା ଜାଣୁରେ....
ଭାବର ଠାକୁର ଭାବକୁ ତୁ ଜାଣୁ
ଏହା ନୁହେଁ କେବେ ମିଛରେ....
ସେଥିପାଇଁ ମୋତେ, କହିବାକୁ ତୋତେ
ଦରକାର ପଡ଼େ ନାହିଁରେ...
ଏମିତି ସାଥେ ତୁ ରହିଥା ମୋହର
ଯିବୁନାହିଁ ମୋର ପାଶୁରେ....
ଏତିକି ମାଗୁଣି ତୋଳି ଧର ପ୍ରଭୁ
ହୃଦୟେ ରଖିଛି ତୋତେରେ.... ॥



# ପୂର୍ଣ୍ଣ ବ୍ରହ୍ମ

ହେ' ପ୍ରଭୁ ଲୀଳାମୟ
ତୁମେ ହିଁ ସତ୍ୟ
ତୁମେ ହିଁ ନିତ୍ୟ,
ତୁମେ ଅନାଦି
ତୁମେ ଆଦିତ୍ୟ,
ତୁମେ ଚିରନ୍ତନ
ତୁମେ ଚିର ଶାଶ୍ୱତ,
ତୁମେ ହିଁ ସୃଷ୍ଟି
ତୁମେ ହିଁ ବ୍ରହ୍ମ,
ତୁମେ ହିଁ ଆକାର
ତୁମେ ନିରାକାର,
ତୁମ ବିନା ସଂସାର
ନୁହେଁ ଅସାର ।।



# ଆହେ ଭକ୍ତ ବନ୍ଧୁ

ହେ' ଚକାନୟନ ହେ ଦିବ୍ୟ ଲୋଚନ
ତୁମ ଚରଣରେ ଅଧମ ଅର୍ପିତ
ବାରେ କ୍ଷମାକର ଆହେ କୃପା ବର
ଅନ୍ତର୍ଯ୍ୟାମୀ ନାଥ କମଳା କାନ୍ତ ।
ତୁମରି ମହିମା ସବୁ ନାହିଁ ଜଣା
ବୁଝି ହୁଏ ନାହିଁ ସବୁ କଥା
କେତେ ଲୀଳା ତୁମ୍ଭ ଚାଲିଛି ସଂସାରେ
କେ କହି ପାରିବ ନୁହେଁ ଅନ୍ୟଥା ।
ମଦନ ମୋହନ ଦୀନବନ୍ଧୁ ତୁମେ
ଦୀନ ଦୁଃଖୀ ଦୁଃଖ କର ହରଣ
ଭକ୍ତ ବନ୍ଧୁ ତୁମେ ଭକ୍ତର ହୃଦୟେ
ସଦା ଥାଅ ଯିଏ ପଶେ ଶରଣ ।



# ପ୍ରଭୁ ହାରିବାକୁ ଦିଅ ନାହିଁ

ହେ ମୋର ଆତ୍ମାର ଈଶ୍ୱର
ତୁମ ପାଶେ ପଶିଛି ଶରଣ
ଜୀବନର ଚଲାପଥେ
କର ମୋତେ ତାରଣ
ଆସୁ ଯେତେ ବାଧା ବିଘ୍ନ
ଝଡ ଝଞ୍ଜାର ପ୍ଲାବନ
ସହିବାକୁ ଶକ୍ତିଦିଅ
ଏହା ମୋର ନିବେଦନ
ତୁମରି ଆଶିଷ ବଳରେ
ଆଗକୁ ମୁହିଁ ବଢ଼ିବି
ଜୀବନ ଯନ୍ତ୍ରଣା ଯୁଦ୍ଧେ
ଜିତିବା ମୁହିଁ ଶିଖିବି ।।

(ଭାଗ - ୨)

ଆହେ' ମୋ 'କାଳିଆ' ହୃଦୟେ ଡାକୁଛି
'ଆ' ମୋର ପାଶେ ଚ଼ଲି,
ଆଖି ବୁଜିଲେ ତୁ ଆଖି ଖୋଲିଲେ ତୁ
କେହି ନୁହେଁ ତୋ' ପରି
ତୁ ମୋ' କାଳିଆ ହୃଦୟେ ବସିଛୁ
ତୋ'ତେ ହୁଏ ଖାଲି ଝୁରି,
ସବୁ ଏଠି ମାୟା....ମାୟା ଆଉ ମାୟା
ତୁ କେବଳ ସତ୍ୟ ଅଟୁ ମୋ' କାଳିଆ ।
ତୁ କେବଳ ସତ୍ୟ ଅଟୁ ।
ତୋ'ର ନାମ ଧରି ଚ଼ଲିଯାଉ ଦିନ
ଏତିକି କରୁଛି ଅଳି ।।

# ଆହେ ଜଗନ୍ନାଥ

ଜଗନ୍ନାଥ ଆହେ, ଜଗନ୍ନାଥ
ଏ ମାୟା ସଂସାରେ
ତୁମେ ଏକା ସତ୍ୟ, ତୁମେ ଏକା ସତ୍ୟ
ଏ ମୋହ ମାୟାର ମିଛ ସଂସାରେ
ଛନ୍ଦି ଦେଇ ତୁମେ
ଦେଉଛ ଅନେକ କଷ୍ଟ,
ଆଖିରୁ ନିତି ବୁହାଇ ଲୁହ
କରୁଛ ଛଟପଟ,
ଏତିକି ମାଗୁଣି ଟେକି ଧର ହରି
ଏ ମାୟା ବନ୍ଧନୁ ମୁକୁଳିବାକୁ
ଦେଖାଅ ମୋତେ ବାଟ ।।

(ଭାଗ - ୨)

ହେ ପ୍ରଭୁ ମୋ ହୃଦୟର 'କଳାକାହ୍ନୁ'
ତୁମକୁ ଭଲପାଏ.... ତୁମକୁ ଭଲପାଏ
ମନ ଭରି ଭଲ ପାଏ ମୁଁ
ତୁମେ ଜାଣିଛ ପ୍ରଭୁ ?
ମୁଁ କେତେ ଭଲପାଏ ତୁମକୁ....
ପ୍ରତିକ୍ଷଣେ, ପ୍ରତି ମୁହୂର୍ତ୍ତରେ
ଅନୁଭବ କରେ ତୁମେ ଅଛ ମୋ ସାଥିରେ
ମୋ ହୃଦୟରେ, ମୋ ଆତ୍ମାରେ,
ଆଉ କ'ଣ ଯେ ମୋର ଲୋଡ଼ା !
କେବଳ ତୁମରି ବିନ୍ଦୁଏ ସ୍ନେହ ଓ କରୁଣା ।।



# ତୁମ ନାମ ଧରି ଭକ୍ତ ହୁଏ ପାର

କଳାକାହ୍ନୁ ତୁମେ କାଳିଆ ଠାକୁର
ତୁମ ନାମ ଧରି ଭକ୍ତ ହୁଏ ପାର ॥

ତୁମରି ନାମରେ କେତେ ଯେ ମାହାତ୍ମ୍ୟ
ଏକଥା କରିଛ ନିଜେ ପ୍ରମାଣିତ ॥

ଅଜାମିଳ ନାମେ ସେ ମହାପାପୀ
ତରିଗଲା ପୁତ୍ର ନାମକୁ ଜପି ॥

ତୁମ ନାମ ଧରି ଡାକ ଦେଲେ ଭକ୍ତ
ଖୁସି ହୁଅ ପ୍ରଭୁ ଅନ୍ତର ସହିତ ॥

କର୍ମ କରିଯିଏ ତୁମକୁ ସ୍ମରେ
ତୁମେ ସଦା ଥାଅ ତାର ପାଶରେ ॥

ବରଷା କରୁଣା ଢ଼ାଳି ଦିଅ କରେ
ଦୁଃଖ ଓ ଯନ୍ତ୍ରଣା ଫେଡି ନିଅ ବାରେ ॥



# ପ୍ରଭୁ ସବୁ ତୁମରି ହାତେ

ପ୍ରଭୁ ପାଦତଳେ ପ୍ରଣତି ମୁଁ ଢ଼ାଳେ
ସକାଳ ଆଉ ସଞ୍ଜରେ
ସମସ୍ତେ ରୁହନ୍ତୁ ବହୁତ ଭଲରେ
କେହି ନ ରୁହନ୍ତୁ ଦୁଃଖରେ //୧//

ପରମକର୍ତ୍ତା ସେ ସବୁ ଜାଣନ୍ତି
କର୍ମ ଅନୁସାରେ ଫଳ ଦିଅନ୍ତି
ଏ କଥା ଭାବି ଯେ କର୍ମ କରନ୍ତି
ବିପଦରୁ ସେ ଉଦ୍ଧରି ଯା'ନ୍ତି //୨//

ପ୍ରଭୁ ଲୀଳାମୟ ଜଗତ ଠାକୁର
ସବୁ ତ ତୁମରି ହାତେ
ହୃଦୟ ଭକ୍ତିରେ ଡାକିଲେ ଭକ୍ତ
ତୁମେ ରୁହ ତା'ର ସାଥେ //୩//



# 'ପ୍ରଭୁ ଦୁଃଖ ହାରି

'ପ୍ରଭୁ' ଦୁଃଖ ହାରି କରୁଣା ବିହାରୀ
ଅଜ୍ଞାନ ସନ୍ତାନ କରୁଛି ଅଳି
ସନ୍ତାନଙ୍କୁ ତୁମେ ସୁପଥରେ ନେଇ
ସୁନ୍ଦର ସଂସାର ଗଢ଼ ତୋଳି ।।୧।।

କୋଟିଏରେ ମୋତେ ଗୋଟିଏ ତ କରି
ଗଢ଼ିନିଅ ପ୍ରଭୁ ବିହାରୀ
ସଂସାର ଜନର ସେବା କରିବାକୁ
ଜ୍ଞାନ, ବୁଦ୍ଧି ବଳ ଦିଅ ଭରି ।।୨।।

ତୁମରି ଚରଣେ ଶରଣ ପଶିଲି
ଆଶୀର୍ବାଦ କର ହରି
ଦୁନିଆରୁ ସବୁ ଦୁଃଖ, ଶୋକ, କ୍ଲେଶ
ଅକ୍ଲେଶରେ ନିଅ ଫେରି ।।୩।।

ଦୁର୍ଜନ ମାନଙ୍କୁ ବାଟ ତ କଢ଼ାଇ
ସୁପଥରେ ନିଅ ଗୋସାଇଁ
ସଂସାରକୁ କର ସ୍ୱଚ୍ଛ ନିରିମଳ
ସୁଜନମାନଙ୍କୁ ଆଶିଷ ଦେଇ ।।୪।।



# ତୁଳସୀର ହାରେ....

ଜଗନ୍ନାଥ ମହାପ୍ରଭୁ କି ସୁନ୍ଦର ଦିଶୁଛ
ତୁଳସୀର ହାରେ ଦୟଣାର ଚୁଳେ
କି ! ସୁନ୍ଦର ଶୋଭା ପାଉଛ,
ଚକା ଚକା ନେତ୍ରେ ଚାହିଁଛ
ଭକ୍ତକୁ ଅପେକ୍ଷା କରିଛ,
ଭକ୍ତଗଲେ ତୁମ ପାଶ
ଦେଖି ହୁଅ ଭାରି ତୋଷ
ସେଥିପାଇଁ ଟାଣି ନିଅ
ପ୍ରତିଦିନ ଶହ ଶହ ଭକ୍ତ
ତୁମ ପାଶେ ଭକ୍ତ ପହଞ୍ଚି
ଦେଖେ ତୁମ କଳା ଶ୍ରୀମୁଖ,
ଭକ୍ତଙ୍କର ଗହଳି ଦେଖି
ଖୁସି ହୁଅ ରତ୍ନ ସିଂହାସନେ ବସି ।।



# ଆହେ ଚକା ନୟନ....

ଆହେ ଚକାନୟନ ପ୍ରଭୁ କଳା ଠାକୁର
ତୁମ ଶ୍ରୀମୁଖକୁ ଚାହିଁ ଦେଲେ ଥରେ
ପେଟ ପୁରିଯାଏ ମୋର
ଦୁଃଖ ଚାଲିଯାଏ ମୋର ।
ମଝିରେ ଭଉଣୀ ଦୁଇ ପାଶେ ଭାଇ
ଦିଶୁଛ କେଡେ ସୁନ୍ଦର,
ଦେଖିଲେ ସେ ଦିବ୍ୟରୂପ
ମନ ଭରିଯାଏ ପେଟ ପୁରିଯାଏ ମୋର ।
ବାର ବାର ଯାଏ ତୁମର ପାଶକୁ
ଦେଖିବାକୁ ତୁମ କଳା ବଦନକୁ
କଳା ବଦନକୁ ଦେଖିଦେଲେ ଥରେ
ପେଟ ପୁରିଯାଏ ମୋର....
ଦୁଃଖ ଚାଲିଯାଏ ମୋର.... ।।

ଭାଗ-୨

ପ୍ରଭୁ ଚକାନୟନ ତୁମେ କଳା ଠାକୁର
ଚକା ଚକା ଆଖିରେ
ଦିଶ କେଡ଼େ ସୁନ୍ଦର
ତୁମ ରୂପ ଯିଏ ଥରେ
ଦେଖିଛି ନୟନରେ
ମୋହିଛି ମନ ତାର
ହୃଦୟ କନ୍ଦରରେ
ପ୍ରଭୁ ଚକାନୟନ ସତରେ ...
ଚକା ଚକା ଆଖିରେ
ଦିଶ ବଡ଼ ସୁନ୍ଦର ।।





# ଏ ବାଇଆ ମନ....

ଜଗନ୍ନାଥ ମହାପ୍ରଭୁ ତୁମେ ବଡ ଦୟାଳୁ
ସଂସାର ଲୀଳା ଦେଖୁଛ ନୀଳ କନ୍ଦରରୁ
ରତ୍ନ ସିଂହାସନେ ବସି ପୂଜା ତ ପାଉଛ
ଭକ୍ତ ମାନଙ୍କ ଦୁଃଖ ହରଣ କରୁଛ ।

ଥରେ ଗଲେ ତୁମ ପାଶ ଦେଖି ଭରେ ମନ ତୋଷ
ଦେଖିଲେ ତୁମ ନୟନ ଆସିବାକୁ ନ ହୁଏ ମନ,
ମିଶିଗଲେ ଥରେ ତୁମ ନେତ୍ରରେ ମୋ ନେତ୍ର
ମନ ଓ ଆତ୍ମା ହୁଏ, ଭାବ ବିହ୍ୱଳିତ
ତୁମ ଚରଣରେ ମୋର କୋଟି କୋଟି ପ୍ରଣାମ
ତୁମ ପାଶେ ବନ୍ଧା ଥାଉ ଏ ବାଇଆ ମନ ।।



# କି ଦେଇ ପୂଜିବି....

ପ୍ରଭୁ ଅନ୍ତର୍ଯ୍ୟାମୀ, କି ଦେଇ ପୂଜିବି
ତୁମକୁ ମୁହିଁ କିଛି ଜାଣିପାରୁ ନାହିଁ
ଯାହା ତ ଦେଖୁଛି ସବୁତ ତୁମରି
ତୁମକୁ କଅଣ ଦେବି
କେବଳ ମୋ ପାଶେ ଅଛି ତୁମ ପାଇଁ
ହୃଦୟର ଭକ୍ତି ଅର୍ଘ୍ୟଟି
ମୋ ହୃଦୟର ଭକ୍ତି ଅର୍ଘ୍ୟଟି....
ସାଦରେ ଗ୍ରହଣ କରିବ ପ୍ରଭୁ
ମନରେ ନ ଭାବି କିଛି
ଏହି ବିଶ୍ୱାସ ମୁଁ ରଖିଛି ପ୍ରଭୁ
ଏହି ବିଶ୍ୱାସ ମୁଁ ରଖିଛି ।।



# ଅନ୍ତରର ସ୍ୱର

ପ୍ରଭୁ ଅନ୍ତରରୁ ଡାକୁଛି ତୁମକୁ
ବାରେ ଶୁଣ ମୋର ଗୁହାରି
ମନର ବେଦନା ହୃଦୟର ବ୍ୟଥା
ନିଅ ପ୍ରଭୁ ତୁମେ ହରି //୧//

ଆକୁଳେ ବିକଳେ ରହିଁ ବସି ଅଛି
ତୁମ ଦିବ୍ୟ ରୂପ ପାଶେ
ତୁମ ଚକା ନେତ୍ରେ ଦେଖୁଅଛି ମୁହିଁ
କେତେ ଯେ ସପନ ସୁଖେ //୨//

ସବୁ ଯେ ସପନ ହୋଇବ ପୂରଣ
ଏକଥା ମୁଁ ଭାବୁନାହିଁ
କେବଳ ରହୁଁଛି କରୁଣା ତୁମର
ବିନ୍ଦୁଏ ପାଇବା ପାଇଁ //୩//

ବିନ୍ଦୁଏ କରୁଣା ଦେଇଦେଲେ ମୋତେ
ସରିଯିବ ନାହିଁ ତୁମର
ତୁମରି ବିନ୍ଦୁଏ କରୁଣାରେ ମୋର
ଇଚ୍ଛା ହୋଇ ଯିବ ପୂରଣ //୪//
ସେହି ଇଚ୍ଛା ନୁହେଁ ଧନର ଭଣ୍ଡାର
ମାତ୍ର କାଣିଚାଏ ଜ୍ଞାନ
ସେହି ଦିବ୍ୟଜ୍ଞାନ ବଳରେ ମୋହର
ରହିବ ମହତ ମାନ //୫//



# କି ସୁନ୍ଦର ତୁମ ମୁଖ ମଣ୍ଡଳ

ହେ କାଳିଆ ସାଆନ୍ତ
କି ସୁନ୍ଦର ତୁମ ମୁଖ ମଣ୍ଡଳ
କଳା ବଦନରେ ନାଲି ଓଠ ତୁମ
ଧଳା ଧଳା ଚକା ଆଖିରେ
କଳା ଚକାଡୋଳା ତୁମର
ସତରେ....ଦିଶୁଅଛ ଭାରି ସୁନ୍ଦର,
ସତରେ....ଦିଶୁଅଛ ଭାରି ସୁନ୍ଦର
ସେମିତି ଅପଲକ ନୟନେ
ସଦା ତୁମ ଚନ୍ଦ୍ର ବଦନକୁ
ଦେଖିବାକୁ ଇଛା ହେଉଛି ମୋର....
ଦେଖିବାକୁ ଇଛା ହେଉଛି ମୋର....
ସତରେ କି ସୁନ୍ଦର ତୁମ  ମୁଖ ମଣ୍ଡଳ....
ଦିଶୁଅଛ ଭାରି ସୁନ୍ଦର....
ଦିଶୁଅଛ ଭାରି ସୁନ୍ଦର.... ॥



# ଚକା ଆଖିରେ ଚକା ଆଖି

ଚକା ଆଖିରେ ଚକା ଆଖି
ତୋ' ଆଖିରେ ମୋ ଆଖି ରହିଯାଉ ଲାଖି
ସଦା ଦେଖୁଥିବି, ତୋତେ ଦିନରାତି,
ରହିଥା ତୁ ମୋର ପାଶେ
ଭୁଲିବି ନାହିଁ କଦାଚିତେ
ତୋତେ ଭୁଲିବାକୁ ଦେବି ନାହିଁ ମୋତେ
ମୋ ଭକ୍ତି ଡୋରିରେ ବାନ୍ଧି ରଖିବି
ତୋତେ.....
ମୋ ଭକ୍ତି ଡୋରିରେ ବାନ୍ଧି.... ରଖିବି
ତୋତେ.... ।।



# ପ୍ରଭୁ ଅନ୍ତର୍ଯ୍ୟାମୀ

ପ୍ରଭୁ ଅନ୍ତର୍ଯ୍ୟାମୀ ସବୁ ତୁମେ ଜାଣୁଛ
କେତେ ସୁନ୍ଦର ଭାବେ ସଂସାର ଲୀଳା କରୁଛ
ମୁନଷ୍ୟଠାରୁ ବୃକ୍ଷଲତା ଜୀବକୀଟ ପରିଯନ୍ତ
ସଂସାରରେ ଆତଯାତ କିପରି କରୁଛ !

ସବୁତ ଆଶ୍ଚର୍ଯ୍ୟ ଲାଗେ ଏ ସବୁ ଦେଖିଲେ
ରାତିଦିନ ସୂର୍ଯ୍ୟ ଚନ୍ଦ୍ର ସବୁ ତୁମ ହାତରେ
ତୁମେ ନ ରହିଁଲେ ପ୍ରଭୁ କିଛି ନ ହୁଏ ସଂସାରେ
ସଂସାରର ଲୀଳା ରଚି ଦେଖୁଛ ଖୁସିରେ।

ତୁମେ ନ ରହିଁଲେ ପ୍ରଭୁ ଗଛପତ୍ର ବି ହଲେନି
ତୁମ ବିନା ଏ ସୃଷ୍ଟି କେବେ ରହିବନି ।।



# ମାଧବ ଆହେ ମାଧବ

ମାଧବ, ମାଧବ ଆହେ ମାଧବ
କେତେ ଯେ ନାମ ତୁମର
ଯେଉଁ ନାମ ଧରି ଡାକିଲେ ତୁମକୁ
ଶୁଣ ବୋଲି କହେ ଅନ୍ତର ॥୧॥

କେଉଁ ନାମ ଧରି ଡାକିବି ତୁମକୁ
ଜାଣି ପାରୁନି ଏ ମନ
ତୁମ ପାଶେ ସଦା ମତି ରହି ଥାଉ
ତୁମେ ମୋ ଜୀବନ ଧନ ॥୨॥

ଦୟାମୟ ବୋଲି କହୁଛି ତୁମକୁ
ଦୟା ରଖିଥିବ ମୋ' ଠାଇଁ
ଜୀବନର ସବୁ ଦୁଃଖ ଯନ୍ତ୍ରଣାକୁ
ଦୂର କରିନେବ ଗୋସାଇଁ ॥୩॥

ତୁମରି ଚରଣେ ପଶୁଛି ଶରଣ
କ୍ଷମା କର ଦୋଷ ତ୍ରୁଟି
ଆଲୋକ ପଥର ଯାତ୍ରୀ କରି ମୋତେ
ଦିବ୍ୟ ଜ୍ଞାନ କର ସୃଷ୍ଟି ॥୪॥



## ହାରିବାକୁ ଦିଅ ନାହିଁ

ଆହେ ପ୍ରଭୁ ଦୟାମୟ
ପଶିଛି ମୁଁ ଶରଣ
ଜୀବନର ଚଲାପଥେ
କର ମୋତେ ତାରଣ //୧//
ଆସୁ ଯେତେ ବାଧା ବିଘ୍ନ
ଝଡଝଞ୍ଜାର ପ୍ଲାବନ
ସହିବାକୁ ଶକ୍ତି ଦିଅ
ଏହା ମୋର ଜଣାଣ //୨//
ତୁମରି ଆଶିଷ ବଳେ
ଆଗକୁ ମୁଁ ବଢ଼ିବି
ଜୀବନ ଯନ୍ତ୍ରଣା ଯୁଦ୍ଧେ
ଜିତିବା ମୁଁ ଶିଖିବି //୩//
ଯେତେ ଥିଲେ ଦୁଃଖ କଷ୍ଟ
ମଥା ପାତି ସହିବି
ତୁମରି ଚରଣେ ରହି
ଜନ ସେବା କରିବି //୪//
ଏତିକି କରୁଣାକର
ପ୍ରଭୁ ଚକା ନୟନ
ସମାଜର ସେବା କରି
ଯାଉ ମୋର ଜୀବନ //୫//



# କ୍ଷମା କରି ଦିଅ ପ୍ରଭୁ

କେତେ ଭୁଲ୍ ଠିକ୍ କରିଛି ଜୀବନେ
ଜାଣି ନାହିଁ ପ୍ରଭୁ ମୁହିଁ
ସବୁତ ତୁମରି ହିସାବ ଖାତାରେ
ରହିଛି ଲିଖନ ହୋଇ ॥ ୧ ॥

ଯଦି କେଉଁ ଭୁଲ କରିଛି ମୁଁ କିଛି
କ୍ଷମା କରିଦେବ ପ୍ରଭୁ
ଅଧମ ତୁମରି ଚରଣେ ଆଶ୍ରିତ
ଅଳି କରୁଛି ତୁମକୁ ॥ ୨ ॥

ଜୀବନରେ କେବେ ଆଉ ଭୁଲ କାମ
ମୋ'ଦେଇ କରିବ ନାହିଁ
ଏତିକି ମାଗୁଣି କରୁଅଛି ମୁହିଁ
ତୁମରି ଚରଣେ ରହି ॥ ୩ ॥

ଜଣା,ଅଜଣାରେ କରିଥିବା ଭୁଲ୍
ନିଶ୍ଚିତ ଯେ ଦଣ୍ଡନୀୟ
ଏକଥା ଜାଣି ମୁଁ କରୁଛି ବିନତୀ
ତୁମ ପାଶେ କ୍ଷମଣୀୟ ॥ ୪ ॥



# ତିନି ଠାକୁର

ଜଗତର ନାଥ ଜଗତ ଠାକୁର
କେତେ ଲୀଳା ତୁମେ ରଚିଛ
ଭାଇ ଭଉଣୀଙ୍କୁ ସାଙ୍ଗରେ ଧରିଣ
ରତ୍ନ ସିଂହାସନେ ବସିଛ ।।୧।।
ତିନି ଜଣଙ୍କର ତିନୋଟି ରଙ୍ଗରେ
ରତ୍ନବେଦୀ ଚମକୁଛି
ଭାଇ ତ ଧବଳ ଭଉଣୀ ହଳଦି
ତୁମ୍ଭ ମୁହଁ ଫୁଟି ଦିଶୁଛି ।।୨।।
କଳା ବଦନରେ ଧଳା ଚକା ନେତ୍ର
ଭକ୍ତଙ୍କର ମନ କିଣୁଛି
ଆହା ! କି ସୁନ୍ଦର ଚନ୍ଦ୍ର ମୁଖ ତୁମ୍ଭ
ଦେଖି ପେଟ ମୋର ପୂରୁଛି ।।୩।।
ସତେ କି ! ଋହିଁଛ ଦେଖୁଅଛ ମୋତେ
ହସ ହସ ଋହାଣିରେ
ମୋର ମନ କଥା ଜାଣି ପାରୁଛ କି !
ଭାବୁଛି ମୁଁ ଅନ୍ତରରେ ।।୪।।
ଅନ୍ତର୍ଯ୍ୟାମୀ ତୁମେ ଅନ୍ତର କଥାକୁ
ଜାଣିପାର କ୍ଷଣକରେ
ସେଥିପାଇଁ ମୁହିଁ ଚିନ୍ତା କରୁନାହିଁ
ସମର୍ପିଛି ଚରଣରେ ।।୫।।



# ମୋ ଲୁହର ଝରଣା

ଯେତେ ପାରୁଛ ପ୍ରଭୁ
ଲୁହ ଦିଅ ଆଖିରେ
ଧୋଇ ଦେବି ତୁମ ପାଦ
ମୋ ଲୁହ ଝରଣାରେ ॥
ଲୁହର ଝରଣା ବୋହି
ସୃଷ୍ଟି ହେବ ସରୋବର
ସେ ସରୋବରରେ ଫୁଟିବ
ଶତଦଳ କମଳ ॥
ସେ କୋମଳ ପଦ୍ମକୁ
ତୁମ ପାଦେ ସର୍ମପିବି
ତୁମରି ଆଶିଷ ପାଇ
ଧନ୍ୟ ମୁହିଁ ହୋଇ ଯିବି ॥
ଏତିକି ମାଗୁଣି କର
ଆହେ ମୋର କୃପାବର
ତୁମ ଚରଣରେ ବନ୍ଦିରହି
ଯାଉ ବିତି ଦିନ ମୋର ॥



# ତୁମେ ବନ୍ଧା ଭକ୍ତର ଭକ୍ତିରେ

ଜଗତର ନାଥ ଜଗତ ଠାକୁର
ସାରା ବିଶ୍ୱ ବ୍ରହ୍ମାଣ୍ଡର ତୁମେ ତ ଈଶ୍ୱର ॥

ଆହେ ଜଗନ୍ନାଥ ଡାକିଲେ ତୁମକୁ
ଚାଲିଆସ ତୁମେ ତୁମ ଭକ୍ତର ପାଶକୁ ॥

ଭକ୍ତ ବନ୍ଧା ତୁମ ସ୍ନେହର ଡୋରିରେ
ତୁମେ ବନ୍ଧାପ୍ରଭୁ ଭକ୍ତର ଭକ୍ତିରେ ॥

କେତେ ମନକଥା ଜାଣ ତୁମେ ସବୁବେଳେ
ଭକ୍ତକୁ ପରୀକ୍ଷା କର  ବେଳେବେଳେ ॥

ନିରାଶ ନ ହୋଇ ଭକ୍ତ ଡାକିଲେ ତୁମକୁ
କୃପାବର୍ଷା କରିଦିଅ ତୁମର ଭକ୍ତକୁ ॥

ସଦାଥାଅ ତୁମେ, ତୁମ ଭକ୍ତର ପାଶେ
ଦୁଃଖ କଷ୍ଟ ହରିନିଅ ସବୁ ନିମିଷକେ ॥



# ପ୍ରଭୁ ପାଦ ପଦ୍ମେ...

ପ୍ରଭୁ ପାଦ ପଦ୍ମେ ଶରଣ ଯାଇଛି
ତୁମରି ଆଶିଷ ପାଇଁ
ତୁମ କରୁଣାରେ ବାହିବି ଦିନ ମୁଁ
ତୁମ ଚକାଆଖି ଚାହିଁ ।
ଦୋଷ ତ୍ରୁଟି ମୋର ଧରିବନି ପ୍ରଭୁ
କରିଦେବ ମୋତେ କ୍ଷମା
ତୁମ ଶ୍ରୀଚରଣେ ଶରଣ ପଶିଛି
ପର କରିବନି ଜମା ।
ମନର ବେଦନା ଯନ୍ତ୍ରଣା ଦାୟକ
ତାକୁ ନିଅ ପ୍ରଭୁ ହରି
ତୁମରି କରୁଣା ବରଷି ଯାଉ ଏ
ଅଜ୍ଞାନର ମନ ଜାଣି
ତୁମରି କରୁଣା ବାରିଧିରେ ମୋର
ଦୁଃଖ ଯାଉ ସବୁ ଟଳି
ତୁମରି ନାମକୁ ସଦା ଭଜି ଭଜି
ଜୀବନ ଯାଉ ମୋ ଚଳି ।।



# କଳାକାହ୍ନୁ

କଳା କାହ୍ନୁରେ ଭାରି ଅମାନିଆ ହୋଇଲୁ
ମା' ଦେବକୀ ଗର୍ଭରୁ ଜାତ ହୋଇ 'ତୁ'
ମା' ଯୋଶୋଦା କୋଳରେ ବଢ଼ିଲୁ ॥
ଗୋପପୁରେ ରହି ସର ଲବଣୀ ତୁ
ନିତି ଚୋରି କରି ଖାଇଲୁ
ମାଇଁ ରାଧାଙ୍କ ପ୍ରେମରେ ପଇଲୁ ॥
ଦୁଷ୍ଟ ମାମୁ କଂସର ବିନାଶ ପାଇଁ
କେତେ ଲୀଳା ତୁହି ରଚିଲୁ
କଳା କାହ୍ନୁରେ....ଭାରି ଅମାନିଆ
ହୋଇଲୁ ॥



# ମଦନ ମୋହନ

କଳା କାହ୍ନୁ ତୁମେ ମଦନ ମୋହନ
ଭାରି ମଧୁର ତୁମ ବଂଶୀର ସ୍ୱର
ବଂଶୀର ତାଳେ ହୃଦୁ ଝରିପଡ଼େ
ଅମୃତ ରସର ମଧୁଝର
କାହା ହୃଦୟରେ ଭରିଦିଅ
ତୁମେ ପ୍ରେମମୟ ପରଶ
କଳାକାହ୍ନୁ ତୁମେ ଭାରି ରସିକ
ତୁମ ବଂଶୀସ୍ୱନେ ମନହୁଏ ହରଷ.... ।।



## ଶ୍ୟାମ ଘନରେ...

ଶ୍ୟାମଘନରେ, କଳା କାହ୍ନୁରେ
ତୋ ବଂଶୀର ସ୍ୱନଶୁଣି
ଲାଜ ସରମ ଛାଡି ଯମୁନା କୂଳକୁ
ଧାଆଁନ୍ତି ଗୋପର ନାରୀ,
ଗୋପାଙ୍ଗନାଙ୍କୁ ଦେଖି
ଲୁଚକାଳି ଦିଅ ଖେଳି
ଯମୁନାରେ ତନୁ ପଖାଳିଲା ବେଳେ
ତାଙ୍କ ବସ୍ତ୍ର ନିଅ ହରି,
ଭାରି ରସିକିଆ ନାଗର ତୁମେ
ଗୋପୀଙ୍କ ସଙ୍ଗେ ମାତି
ରାଧାଙ୍କୁ କର ପ୍ରୀତି.... ।।



## ମୋ ହୃଦୟର ବଂଶୀ

ମୋ' ହୃଦୟରୁ ପ୍ରଭୁ କାଳିଆ କାହ୍ନୁ
ତୁମ ବଂଶୀର ସ୍ୱର ସଦା ବାଜୁଥାଏ
ମୋ କର୍ଣ୍ଣରେ ଗୁଣୁ ଗୁଣୁ ।
ହୃଦୟରେ ଭରିଯାଏ ସ୍ୱରର ସ୍ପନ୍ଦନ
ମନ ହୁଏ ବ୍ୟଗ୍ରିତ ଶୁଣିବାକୁ ତୁମ ସ୍ୱନ
ସତରେ....ତୁମର ବଂଶୀର ସ୍ୱର
ଭାରି ମଧୁର.... ।।







# ହରି ନାମର ମାହାତ୍ମ୍ୟ

ଆହେ ଦୟାମୟ ହରି
ଅଜାମିଳ ନାମେ ସେ ମହାପାପୀ
ତରିଗଲା ପୁତ୍ର ନାମକୁ ଜପି,
ପୁତ୍ର ନାମ ତାର ଥିଲା ଯେ ହରି
ହରି,ହରି,ହରି ସେ ବୋଲି
ସବୁ ବିପଦରୁ ଗଲା ମୁକୁଳି,
ଅଜାମିଳ କ'ଣ ଜାଣିଥିଲା
ତା'ର ପୁତ୍ର ନାମରେ
ଏତେ ମହାତ୍ମ୍ୟ ବୋଲି ॥
ଆହେ ଦୟାମୟ ହରି
ଅଜାଣତେ ଯିଏ ତୁମ ନାମ ଧରି
ଡାକି ଦେଲେ ଥରେ ହରି
ଅନେକ ବିପଦୁ ଯାଏ ଉଦ୍ଧରି
ଅନେକ ବିପଦୁ ଯାଏ ଉଦ୍ଧରି.... ॥



# ମା' ଲକ୍ଷ୍ମୀ ଠାକୁରାଣୀ

ଆସ ଆସ ମା' ଲକ୍ଷ୍ମୀ
ଆବାହନ ପାଇଁ ତୁମ
ହସ୍ତେ ଧରି ଅଛି ମୁହିଁ
ସଜ କୋମଳ ପଦ୍ମ।
ଧରାକୁ ଓହ୍ଲାଇ ଆସ ମା'
ଠାକୁରାଣୀ ତୁମେ
ମୋ ହସ୍ତରୁ ଧରିନିଅ
ପଦ୍ମ ଆନନ୍ଦ ମନେ।
ଭକ୍ତି ଅର୍ଘ୍ୟକୁ ମୋର
ସାଦରେ ଗ୍ରହଣ କର
ସଂସାରରୁ ସବୁ ଦୁଃଖ
ମା' ତୁମେ ହରଣକର।
ଦୀନ ଦୁଃଖୀଙ୍କୁ ମାଆ
କର ତୁମେ ଆଶିଷ
କେହି ନ ରୁହନ୍ତୁ ମା'
ଦୁଃଖ କଷ୍ଟ ଉପାସ ।।



# ମା' ତୁ କମଳା

ମା'ତୁ କମଳା ମା'ତୁ ଚଞ୍ଚଳା
ମା' ଲକ୍ଷ୍ମୀ ଠାକୁରାଣୀ
ତୋରି ହାତରେ ମାଆ
ସଂସାର ଯାକର ପଡି।
ତୋ ଆଶୀର୍ବାଦ ଥିଲେ
କରୁତୁ ଧନର ବରଷା
ତୋ ଆଶିଷ ରହିଲେ
କା'ପେଟ ରହେନି ଅପୋଷା।
ମା'ଗୋ ତୋ ସଂସାରରେ ଅଛନ୍ତି
କେତେ ଯେ ଦରିଦ୍ର ଦୁଃଖୀ
ଓଳିଏ ଖାଇଲେ
ଓଳିଏ ଉପାସ ଗୁହନ୍ତି।
ତୋ ପାଖେ କରୁଛି ମୁଁ
ହୃଦୟରୁ ଭକ୍ତି ଅଳି
ସମସ୍ତଙ୍କର ପେଟ
ମାଆ ଦେ ତୁ ଭରି ॥

✦✦✦

# ଜୟ ମା ତାରିଣୀ

ଜୟ ମା' ତାରିଣୀ ସଙ୍କଟହାରିଣୀ
ବିପଦରୁ ତୁହି କରୁ ଉଦ୍ଧାର
ମାଆ ତାରେଣୀ ନଡିଆ ରଙ୍କୁଣୀ
ନଡିଆରେ ତୋର ଭାରି ଆଦର ॥

ଭାରି ତୋ ସରାଗ ଫୁଲ ମନ୍ଦାର
ସେ ଫୁଲ ମାଳାରେ ଦିଶୁ ସୁନ୍ଦର,
ମା' ମା' ବୋଲି ତୋତେ ଡାକିଲେ
ବିପଦରୁ ତୁହି କରୁ ଉଦ୍ଧାର ॥

ଘଟ ଗାଁରେ ରହି ପୂଜା ପାଉଅଛୁ
ମା'ତାରିଣୀ ନାମ ବୋଲାଉ ଅଛୁ,
ତୋ ପଣତକାନି ତଳେ ଯିଏ ରହିବ
ଅଶେଷ କରୁଣା ସିଏ ପାଇବ ॥

ତୋହରି ନାମରେ ନଡିଆ ବାନ୍ଧିଲେ
ମନୋସ୍କାମନା ତୁ କରୁ ପୂରଣ ॥
କେତେ କୃପାଶିଷ ଢାଳିଦେଉ ମା'
ସବୁ ଦୁଃଖ ତୁ କରୁ ହରଣ ॥



# ମା' ମଙ୍ଗଳା

ମା' କରୁଣାମୟୀ ତୁ ଦୁର୍ଗତି ନାଶିନୀ
ଦୁଃଖ, ହାରିଣୀ ତୁ କୃପା ଦାୟିନୀ
ସିଂହ ବାହିନୀ ମା ମହିଷା ମର୍ଦ୍ଦିନୀ ॥
କେତେ ରୂପରେ ତୁ ପୂଜା ପାଉଛୁ
କେତେ ନାମରେ ତୁ ବୋଲାଉ ଅଛୁ
ମା' ମଙ୍ଗଳା ତୁ ମା ଶାରଳା ॥
ଭଗବତୀ ଆଉ ନାମେ ହିଙ୍ଗୁଳା,
ତାରା, ତାରିଣୀ ତୁ କଟକ ଚଣ୍ଡୀ
ବିରୂପା, ଚର୍ଚ୍ଚିକା ନମୋଃ ନାରାୟଣୀ ॥
ଏହିପରି ନାମେ ବିଭିନ୍ନ ସ୍ଥାନେ
ପୂଜା ପାଉଅଛୁ ଅତି ଯତନେ ॥
ଚୈତ୍ର ମାସରେ ମଙ୍ଗଳା ନାମେ
ପୂଜା ପାଉତୁହି ପ୍ରତି ଘରେ ଘରେ
ଗାଁଠୁ ସହର ସବୁ ଜାଗାରେ
ପୂଜା ପାଉଛୁ ରାସ୍ତା କଡରେ ॥
ନାରୀ ସଭିଏଁ ଏକାଠି ହୋଇ
ଆବାହନ କରନ୍ତି ହୁଳହୁଳି ଦେଇ,
ଧୂପ,ଦୀପ ନୈବେଦ୍ୟ ଝୁଣା ଆଉ ପଣାରେ
ସନ୍ତୁଷ୍ଟ ହେଉ ମା ମନ ଆନନ୍ଦରେ ॥
ଆନନ୍ଦିତ ଯାହା ଉପରେ ହେଉ
ଅଶେଷ କରୁଣା ବରଷି ଦେଉ
ଆନନ୍ଦରେ କ୍ଷମା କରିଦେଉ ସଭିଙ୍କୁ ତୁହି
ସମସ୍ତଙ୍କୁ ରଖୁ ଘଣ୍ଟ ଘୋଡାଇ ॥
ତୋ' ସନ୍ତାନ ତୋ' ପାଶେ କରୁଛି ଅଳି
ସଂସାରର ସବୁ ବିପତ୍ତିକୁ ନେ ମା'ଟାଳି ॥



# ଆସ ଆସ ମା' ଧରାକୁ ଓହ୍ଲାଇ

ଆସ ଆସ ମାଆ ଧରାକୁ ଓହ୍ଲାଇ
ସିଂହ ବାହନରେ ବସି
ତୁମକୁ କରିବେ ସ୍ୱାଗତମ୍ ହସି
ସଂସାରର ଜନବାସୀ ॥ ୧॥

ରଙ୍ଗ ବେରଙ୍ଗରେ କେତେ ସାଜସଜ୍ଜା
ମେଢ଼ ଆଉ ମୂର୍ତ୍ତି ଗଢ଼ି
ଋହିଁ ରହିଛନ୍ତି ତୁମକୁ ଗୋ'ମାଆ
ଭକ୍ତି ଅର୍ଘ୍ୟ ଦେବେ ବାଢ଼ି ॥ ୨॥

ଦୁଃଖ ବଖାଣିବେ ତୁମରି ଆଗରେ
କେତେ ସବୁ କରି ଅଳି
ସବୁ ଦୁଃଖ ତୁମେ କରିବ ହରଣ
ବିପଦକୁ ଦେବ ଟାଳି ॥୩॥

ଅଧମ ତୁମରି ଶରଣରେ ରହି
କରେ ତୁମକୁ ଗୁହାରି
ହିଂସା,ଦ୍ୱେଷ,କ୍ରୋଧ ସଂସାରରୁ ହରି
ଶାନ୍ତି,ମୈତ୍ରୀ ଦିଅ ଭରି ॥ ୪॥

ବରଷକୁ ଥରେ ଆସିଅଛ ମାଆ
ଧରାକୁ ତୁମେ ଓହ୍ଲାଇ
ସୁଜନ ତାରଣ ପାପୀଙ୍କୁ ହରଣ
ଯାଅ ତୁମେ କରିନେଇ ॥ ୫॥



# ଆସିଛି ପାର୍ବଣ

ଆସିଛି ପାର୍ବଣ କାଶତଣ୍ଡୀ ହସେ
ଶରତର ଆଗମନେ
ମାଆ ଆସିଲେଣି ଧରାକୁ ଓହ୍ଲାଇ
ଦେବାକୁ ଆଶିଷ ଜନେ ॥୧॥
ଅଜ୍ଞାନ ଅନ୍ଧାର ଦୂର କରି ମାଆ
ଭରି ଦେବେ ଶାନ୍ତି ମୈତ୍ରୀ
ଦୁନିଆରୁ ହିଂସା ଦ୍ୱେଷ ହରି ନେବେ
ବଢ଼ିଯିବ ସ୍ନେହ ପ୍ରୀତି ॥୨॥
ସିଂହ ବାହିନୀ ମା' ଦୁର୍ଗତି ନାଶିନୀ
ସର୍ବ ଦୁର୍ଗତି ନିଅ ହରି
ସତ୍ୟ,ନ୍ୟାୟ ପଥେ ଚାଲିବାକୁ ଜନେ
ତୁମ ଆଶିଷ ଦିଅ ଭରି ॥୩॥
ଦୁଷ୍ଟଙ୍କ କବଳୁ ସଂସାରକୁ ରଖ
ପାପ କରି ନିଅ ନାଶ
ଦୁର୍ନୀତି ଦୋ'ଗର ହଟାଇ ଗୋ'ମାଆ
ଦୁଃଖ, ଶୋକ କର ଶେଷ ॥୪॥
ହିଂସା,ଦ୍ୱେଷ,କ୍ରୋଧ ହଣା, କଟା,ମରା
ସଂସାରରୁ ନିଅ ହରି
ଦୁର୍ଜ୍ଜନମାନଙ୍କୁ ସଦ୍ ବୁଦ୍ଧି ଦେଇ
ଶାନ୍ତି,ମୈତ୍ରୀ ଦିଅ ଭରି ॥୫॥
ଏତିକି ମାଗୁଣି କରୁଛି ସନ୍ତାନ
ତୁମରି ଚରଣ ତଳେ
ସବୁ ବିପଦକୁ ଟାଳି ନେଇ ମାଆ
ରଖ ତୁମ କାନି ତଳେ ॥୬॥



# ଆସ ମା' ଜଗତ ଜନନୀ

ବର୍ଷାର ବିଦାୟେ ଆସିଛି ଶରତ
　　　　କେତେ ସବୁ ରୂପରଙ୍ଗ ନେଇ
ଶୁଭ୍ର ବସ୍ତ୍ର ପରିହିତା କାଶତଣ୍ଡୀ
　　　　ହସୁଛି ଖିଲି ଖିଲି ହୋଇ ॥ ୧ ॥
ଜଗଜ୍ଜନନୀଙ୍କୁ ଡାକେ ହାତ ଠାରି
　　　　ଆସ ଆସ ମାଆ ଧରାକୁ ଓହ୍ଲାଇ
ଗାଁ ଠାରୁ ସହର ଉତ୍ସବ ମୁଖର
　　　　ଛରିଆଡେ ଖୁସିର ଲହରୀ ॥ ୨ ॥
ଦୁର୍ଗତି ନାଶିନୀ ମହିଷା ମର୍ଦ୍ଦିନୀ
　　　　ଶକ୍ତି ସ୍ୱରୂପିଣୀ 'ମା' ଅମ୍ବିକା
ତୁମେ ମା ଭବାନୀ ବିଘ୍ନ ବିନାଶିନୀ
　　　　ଧରି ରଖିଛ ଏହି ବସୁଧା ॥୩॥
ଢ଼ାଳିଦିଅ ଆସି ତୁମରି ଆଶିଷ
　　　　ସଂସାରର କ୍ଳେଶ ନିଅ ହରି
ସଭିଙ୍କର ଦୁଃଖ ହରି ନେଇ ତୁମେ
　　　　ଆନନ୍ଦ ଉଲ୍ଲାସ ଦିଅ ଭରି ॥୪॥
ତୁମରି ଚରଣେ କରୁଛି ପ୍ରଣାମ
　　　　ମଥା ନଇ ମୁହିଁ କୋଟି କୋଟି
କରୁଣାର ବାରି ବରଷିଣ ଦିଅ
　　　　ସବୁ ଝଡଝଞ୍ଜା ଯାଉ କଟି ॥୫॥



# ଆବାହନ

ମା' କରୁଣାମୟୀ ଦୁର୍ଗତି ନାଶିନୀ
ଶରତ ଋତୁର ଆଗମନେ
ଆବିର୍ଭାବ ହୁଅ ଧରା ପୃଷ୍ଠେ ତୁମେ
କାଶତଣ୍ଡୀ ହସ ଆବାହନେ ।।୧।।

ତୁମ ସ୍ୱାଗତକୁ ରହିଁ ରହିଥାନ୍ତି
ସାରା ସଂସାରର ପୁରପଲ୍ଲୀ
ଆକୁଳ ମନରେ କରିବେ ସ୍ୱାଗତ
ଗୁହାରି କରିବେ ନିଜ ଅଳି ।।୨।।

ଆସ, ଆସ ମାଆ ଧରାକୁ ଓହ୍ଲାଇ
ସିଂହବାହନରେ ହସି ହସି
ସଭିଙ୍କର ଦୁଃଖ କଷ୍ଟ ଯନ୍ତ୍ରଣାକୁ
ହରିନିଅ ତୁମେ ଖୁସି ଖୁସି ।।୩।।

ମହିଷାସୁରକୁ ବଧ କରି ତୁମେ
ଶାନ୍ତିର ପ୍ରତିଷ୍ଠା କଲାପରି
ଏ କଳିଯୁଗର ମହିଷାସୁରଙ୍କୁ
ହତ କରି ଶାନ୍ତି ଦିଅ ଭରି ।।୪।।

ଏତିକି ମିନତି ଚରଣେ ତୁମରି
କରୁଅଛି ଭକ୍ତି ଭାବ ନେଇ
ସାରା ସଂସାରରୁ ହିଂସା, ଦ୍ୱେଷ, କ୍ରୋଧ
ଦୂର କର ଚିରଦିନ ପାଇଁ ।।୫।।



# ମା' ଶକ୍ତି ସ୍ୱରୂପିଣୀ

ଶକ୍ତି ସ୍ୱରୂପିଣୀ ଦୁର୍ଗତି ନାଶିନୀ
ମା' ତ୍ରୈଲୋକ୍ୟ ବାସିନୀ
ହସ, ହସ ମୁଖେ ଯୋଗମାୟା ତୁମେ
ଆସ ମା' ଜଗଜ୍ଜନନୀ //୧//
ସ୍ୱଚ୍ଛ ଶରତର ଆବାହନେ ମାଆ
ଆସ ଧରାକୁ ଓହ୍ଲାଇ
ତୁମକୁ ସ୍ୱାଗତ କରିବା ପାଇଁ କି
ଜନେ ରହିଛନ୍ତି ଚାହିଁ //୨//
ତୁମେ ଆସିବାରେ ଅପାର ଆନନ୍ଦ
ସଭିଙ୍କ ମନରେ କେତେ
ଆଶାର ଆଲୋକ ଜ୍ୱାଳି ଦିଅ ତୁମେ
ହସି ଉଠୁ ମହୀ ସତେ //୩//
ହରି ନିଅ ସବୁ ଏ ମହୀ ମଣ୍ଡଳୁ
ଛଳନା କପଟ ମାୟା
ତବ ଆଶିଷରେ ଝରିପଡୁ ଶାନ୍ତି
ନ ବଢୁ ହିଂସାର କାୟା //୪//
ଅଧର୍ମ ଓ ପାପ ଦୁନିଆରୁ ନିଅ
ଜାଗି ଉଠୁ ସ୍ନେହ ପ୍ରୀତି
ସମସ୍ତଙ୍କ ମନେ ଭରିଦିଅ ଖୁସି
ସୁଖେ ଯାଉ ଦିନ ବିତି //୫//



# ଓଁ ନମଃ ଶିବାୟଃ

ପ୍ରଭୁ ତ୍ରିଲୋଚନ ତୁମେ ଗଙ୍ଗାଧର
କୈଳାସପତି ଶିବ ଶଙ୍କର ।।

ସାରା ତ୍ରିଭୁବନ ଦିବ୍ୟ ତ୍ରିନୟନେ
ଦେଖୁଥାଅ ସଦା ରହି ଧ୍ୟାନ ମନେ ।।

ଆସ ପ୍ରଭୁ ତୁମେ ଧରାକୁ ଓହ୍ଲାଇ
ଦେବାକୁ ଆଶିଷ ସଭିଙ୍କର ପାଇଁ ।।

ତୁମ ପାଶେ ପ୍ରଭୁ କରୁଛି ଜଣାଣ
ଦୁନିଆରୁ ଦୁଃଖ କ୍ଲେଶ କର ହରଣ ।।



# ସଙ୍କଟ ମୋଚନ

ସଙ୍କଟ ମୋଚନ ଜୟବୀର ହନୁମାନ
କେତେ ସଙ୍କଟରୁ କର ଉଦ୍ଧାର,
କଳିଯୁଗରେ ସ୍ୱୟଂ ପୂଜା ପାଉଛ
ଜୟ ବୀର ହନୁମାନ ।
ତ୍ରେତୟା ଯୁଗରେ ସ୍ୱୟଂରୂପେ ଥିଲ
ପ୍ରଭୁ ଶ୍ରୀ ରାମଙ୍କର ବଡ ଭକ୍ତ
ପ୍ରଭୁଙ୍କ ପରୀକ୍ଷାରୁ ଉତ୍ତୀର୍ଣ୍ଣ ହେଲ
ଛାତି ଚିରି ତୁମେ ଦେଖାଇଦେଲ,
କେଡେ ବଡ ଭକ୍ତ ପ୍ରଭୁଙ୍କର ତୁମେ
ଯୁଗ ଯୁଗକୁ ଇତିହାସ ରଚିଲ
ବିଶଲ୍ୟ କରଣୀ ଆଣିବା ପାଇଁ
ଯାଇଥିଲ ଗନ୍ଧମାର୍ଦ୍ଦନ ଧାଇଁ,
ବିଶଲ୍ୟ କରଣୀ ଚିହ୍ନି ନ ପାରିଲ
ପର୍ବତକୁ ତୁମେ ଉଠାଇ ଆଣିଲ,
ସେଥିରୁ ବିଶଲ୍ୟ କରଣୀ ଖାଇ
ଲକ୍ଷ୍ମଣ ତ୍ୱରିତେ ଉଠିଲେ କିଇଁ
ବାନର ସେନାକୁ ସଙ୍ଗରେ ନେଇ
ସମୁଦ୍ରରେ ସେତୁ ବାନ୍ଧିଲ ଯାଇ,
ତୁମ ପରି ବୀର ଜଗତେ ନାହିଁ
ବୀର ହନୁମାନ ନାମ ବୋଲାଇ
ତୁମ ନାମ ଧରି ଡାକଇ ଯିଏ
ଅନେକ ବିପଦୁ ଉଦ୍ଧରେ ସିଏ
ତୁମ ଚରଣରେ କୋଟି ପ୍ରଣାମ
ସଙ୍କଟ ମୋଚନ ବୀର ହନୁମାନ ।।



# ଓଁ ଗୁରୁ ଦେବାୟ ନମଃ

ଦେବ ଗୁରୁ ପାଦତଳେ ଶତକୋଟି ପ୍ରଣାମ
ତୁମରି ଆଶିଷ ପାଇଁ କରୁଛି ମୁଁ ଜଣାଣ ॥
ତୁମ ଆଶୀର୍ବାଦ ହେଲେ ମୁଁ ଆଗକୁ ବଢ଼ିବି
ସିଦ୍ଧ ଚିକିତ୍ସା ଭଲଭାବେ କରିତ ପାରିବି ॥
ସିଦ୍ଧ ଚିକିତ୍ସା ମାଧ୍ୟମରେ ଲୋକ ହେବ ଉପକୃତ
ତୁମରି ନାମ ହୋଇବ ଜଗତେ ବିଖ୍ୟାତ ॥
ତୁମଭଳି ସିଦ୍ଧଗୁରୁ ଜଗତେ ବିରଳ
କିପରି ଭାବରେ ଏ ସବୁ କରିଲ ସରଳ ॥
କଠିନ ତପସ୍ୟା କରି ପାଇଲ ତୁମେ ସିଦ୍ଧ ସୂତ୍ର
ଏହାଦ୍ୱାରା ମିଳୁଅଛି ଆରୋଗ୍ୟ ଶାନ୍ତି ଉତ୍କର୍ଷ ॥
ପ୍ରଭୁ ସିଦ୍ଧେଶ୍ୱର ଗୋରକ୍ଷନାଥଙ୍କ ଆଶିଷ ବଳରେ
ସିଦ୍ଧ ସୂତ୍ର ପାଇଛ ତୁମେ ତପସ୍ୟା ବଳରେ ॥
ଏତେ ସରଳ ଭାବରେ କରିଛ ରଚନା
ଜାତି ଧର୍ମ ବର୍ଣ୍ଣ ନାହିଁ କିଛି ତ ଶୋଚନା ॥
ଯେ କେହି ପାଠୁଆ, ଅପାଠୁଆ ସମସ୍ତେ କରିବେ
ଏହି ସିଦ୍ଧ ଚିକିତ୍ସା କରି ଉପକୃତ ହେବେ ॥
ଧନ୍ୟ ତୁମେ ସିଦ୍ଧସ୍ୱାମୀ, ଧନ୍ୟ ତୁମର ତପସ୍ୟା
ତପସ୍ୟା ବଳରେ ଜିଣିଲେ ଏହି ସିଦ୍ଧ ଚିକିତ୍ସା ॥
ତୁମ ଚରଣରେ ମୋର କୋଟି କୋଟି ପ୍ରଣାମ
ଧନ୍ୟ ହୋଇଯାଉ ଏ ଅଧମ ଜୀବନ ॥



# ମୋ' ଗୁରୁଙ୍କ ପାଇଁ ପଦେ....

ଗୁରୁ ବ୍ରହ୍ମା, ଗୁରୁ ବିଷ୍ଣୁ, ଗୁରୁଦେବ ମହେଶ୍ୱର
ଗୁରୁ ସାକ୍ଷାତ୍ ପରଂବ୍ରହ୍ମ, ତସ୍ମୈ ଶ୍ରୀ ଗୁରୁବେ ନମଃ ॥
ଜୀବନରେ ପାଇଛି ଅନେକ ଗୁରୁ
ଶିକ୍ଷା ଗୁରୁ, ଦୀକ୍ଷା ଗୁରୁ, ପିତାମାତା ଥିଲେ ମୋର ପ୍ରଥମ ଗୁରୁ ॥

ଶେଷରେ ଆସିଛନ୍ତି ମୋ'ଜୀବନରେ
ଶିକ୍ଷା,ଦୀକ୍ଷା, ସଦ୍‌ଗୁରୁ ସବୁ ରୂପରେ
ସିଦ୍ଧସ୍ୱାମୀ ସିଦ୍ଧଗୁରୁ ହରଦାସ ମୋର,
ନିଜକୁ ସମର୍ପି ଦେଇଛି ତାଙ୍କ ଚରଣ ତଳେ
ମୋ'ଜୀବନର ସବୁ ଭଲମନ୍ଦ ଜାଣୁଛନ୍ତି ସେ ପ୍ରତିକ୍ଷଣେ
ତାଙ୍କ ପରି ସିଦ୍ଧଗୁରୁ, ଗୁରୁ ଭିତରେ ଜଣେ ଶ୍ରେଷ୍ଠଗୁରୁ,
ତାଙ୍କ ପାଇଁ ଧନ୍ୟ ହୋଇଛି ମୁଁ,ନୂଆ ଜୀବନ କରିଛି ସୁରୁ ॥
ଓଁ ସିଦ୍ଧସ୍ୱାମୀ ହରଦାସାୟ ନମଃ ॥







# ଆହେ ପ୍ରଭୁ ଚକ୍ରଧର

ଆହେ ପ୍ରଭୁ ଚକ୍ରଧର ନାରାୟଣ
କେଡେ ସୁନ୍ଦର ରୂପ କରିଛ ଧାରଣ

ଶଂଖ, ଚକ୍ର, ଗଦା, ପଦ୍ମ ହସ୍ତେ ଧରି
କି' ସୁନ୍ଦର ଶୋଭା ପାଉଛ ହରି,

ଦେଖିଲେ ତୁମର ରୂପ ସୁନ୍ଦର
ଭାବ ଭକ୍ତିରେ ମୁଁ ହୁଏ ବିଭୋର

ହୃଦୟ ଭରା ଆତ୍ମ ତୃପ୍ତିରେ
ଆଖି ଭିଜିଯାଏ ଲୋତକରେ ମୋର....,

ଆହେ ପ୍ରଭୁ ଚକ୍ରଧର ନାରାୟଣଃ
କି' ସୁନ୍ଦର ରୂପ କରିଛ ଧାରଣ.... ॥



# ସ୍ନାନ ପୂର୍ଣ୍ଣିମା

କାଳିଆରେ, ତୁମ ଡୋରି ଲାଗିଲା
ଆସିଲି ତୋ' ପାଶେ ଧାଇଁ
ସ୍ନାନ ମଣ୍ଡପରେ ଦର୍ଶନ କରିଲି
ବଡ ଦାଣ୍ଡରେ ମୁଁ ଥାଇ ॥୧॥

ତୁମ ନେତ୍ରରେ ମୋ' ନେତ୍ର ମିଶିଗଲା
ଭାବ ବିହ୍ୱୋଳିତ ହେଲି
ମୋ' ଅଶ୍ରୁର ଧାରରେ ସତେ ଯେମିତିକି
ତୁମ ପାଦ ଧୋଇ ଦେଲି ॥୨॥

ମୋ' ଭକ୍ତି ଅର୍ଘ୍ୟକୁ ଗ୍ରହଣ କରିବ
ଆହେ ମୋ' କାଳିଆ ଧନ
ସଂସାରର ଦୁଃଖ ସବୁ ହରିନିଅ
ଶରଣ ପଶିଛି ଏ ଜନ ॥୩॥



# ବାହୁଡା ଯାତ୍ରା

ସଂସାର ଆତ୍ମା ହେ' ପରମ ପୁରୁଷ
ତୁମ୍ଭ ଚରଣରେ କୋଟି ପ୍ରଣିପାତ
ରତ୍ନ ସିଂହାସନୁ ଓହ୍ଲାଇ ଆସିଛ
ପତିତ ଜନର ଉଦ୍ଧାର ନିମିତ୍ତ ॥

ମାନବ ଧର୍ମର ଜୟକାର ଧ୍ୱନୀ
କମ୍ପି ଉଠୁଛି ଆଜି ଏ ଧରା
ଏ ଶୁଭ ଲଗ୍ନରେ ବାହୁଡା ଯାତ୍ରାରେ
ବଡ ଦେଉଳକୁ ଆସୁଛ ପରା ॥

ଉଛୁଳି ପଡୁଛି ଶରଧା ବାଲିରେ
ଭକ୍ତ ଜନଙ୍କର ଭାବ ପୀରତି
ବଡ଼ଦାଣ୍ଡ ଆଜି ପୁରି ଉଠିଲାଣି
ତୋ' ଭକ୍ତି ଭାବରେ ସଭିଁଏ ମାତି ॥

ଜନମ ଦେବୀରୁ ରତ୍ନବେଦୀ ଯିବ
କେତେ ଆନନ୍ଦରେ ଲାଗିଛି ଖେଳା
ରତ୍ନବେଦୀ ତୁମ୍ଭ ଖାଲି ପଡ଼ିଥିଲା
ପୁଣି ଚାଲିବ ସେ ରହସ୍ୟ ଲୀଳା ॥



# କାଳିଆରେ...

କାଳିଆରେ...
ଭୋକ, ଶୋଷ ନିଦ ନେଉଛୁ ଛଡାଇ
ଆଖିରେ ଭରିଛୁ ଲୁହ
କେତେ ବିଶ୍ୱାସ ମୁଁ ରଖିଛି ତୋ'ପରେ
ତୁ ଜାଣିଛୁ କି ନାହିଁ ହଁ ।।

ତୋ' ସନ୍ତାନ ଆଖିରେ ଲୁହ ଦେଇ ତୁ
କି ସୁଖ ପାଉଛୁ କହ
କାହିଁକି କରୁଛୁ ଏତେ ଛଟପଟ
ବ୍ୟଥା ବେଦନାର କୋହ ।।

ଅପେକ୍ଷା କରିଛି ଦିନେ ଜଣାଇବୁ
କେତେ ଖେଳୁ ମାୟା ଖେଳ
ସବୁ ସାକ୍ଷୀ ଅଛୁ ତୁଇରେ କାଳିଆ
ଆସିବ ଦିନେ ସେ ବେଳ ।।



# ଭୁଲିବି ନାହିଁ ତୋତେ...

ସଜଳ ନୟନେ ଦେଖୁଛୁ କାଳିଆ
ଦୁନିଆର ରୀତିନିତି
କେତେବେଳେ କା'କୁ କେଉଁ ବାଟେ ଦେଇ
ହରା ଉଛୁ ତାର ସ୍ଥିତି ।।

ସତରେ କାଳିଆ ତୋ'ର ମାୟାଖେଳା
କେ କହି ପାରିବ କହ
ଛାର ଏ ମଣିଷ ବୁଝି ପାରୁ ନାହିଁ
ଆଖିରୁ ଝାରୁଛି ଲୁହ ।।

ସବୁ ତୋ'ର ଲୀଳା ସବୁ ତୋ'ର ଖେଳା
ତୁହି ଜାଣୁ ଭଲ ମନ୍ଦ
ସତ୍ୟ ଓ ମିଥ୍ୟାର ନିକିତିରେ ଛନ୍ଦୁ
କେ ଜାଣିବ ତୋ'ର ଛନ୍ଦ ।।

ନ୍ୟାୟରେ ଥାଇ ବି ପରୀକ୍ଷା ତୁ କରୁ
ନିର୍ଦୋଷୀକୁ ଦେଉ ଦୁଃଖ
ଆଖିରୁ ଲୋତକ ବନ୍ୟା ବୁହାଇ ତୁ
ମନେ ମନେ ପାଉ ସୁଖ ।।

କାହିଁକି କରୁ ତୁ କପଟ କାଳିଆ
ବୁଝି ହୁଏ ନାହିଁ ସତେ
ଯେତେ କପଟ କଲେ ତୁ କରୁଥା
ଭୁଲିବି ନାହିଁ ତୋତେ ।।



# ଜୀବନ ଯାଉ ତୁମ୍ଭ ନାମ ଜପି....

ପ୍ରଭୁ ତୁମ ପାଶେ କରୁଛି ଗୁହାରି
ମୋ ମନକୁ ରଖ ତୁମ ପାଶେ ବାନ୍ଧି
ଶୟନେ ସ୍ୱପନେ ଜାଗରଣେ ଖାଲି
ଆସୁ ମୋ ମନରେ ତୁମ ପ୍ରତିଛବି
ତୁମ ଚରଣରେ ରହୁ ସଦା ମତି
ଏ ଜୀବନ ଯାଉ ତୁମ ନାମ ଜପି ଜପି ॥



# କ୍ଷମା ପ୍ରାର୍ଥନା

ପ୍ରଭୁଙ୍କ ଚରଣେ, ମଥାନତ କରି
ପ୍ରାର୍ଥନା କରୁଛି ମୁହିଁ
ଲେଖାରେ କିଛି ତ୍ରୁଟି ଥିଲେ ମୋର
କ୍ଷମା କରିଦେବ ସାଇଁ ॥

ଓଁ ଜୟ ଶ୍ରୀ ଜଗନ୍ନାଥ









ଓଡ଼ିଆ ଭାଷା ସାହିତ୍ୟର ଜଣେ ପ୍ରତିଶ୍ରୁତିବଦ୍ଧ ଲେଖିକା ହିସାବରେ ପାଠକ ମହଲରେ ଅମ୍ବିକା ସ୍ୱାଇଁ ବେଶ୍ ପରିଚିତ ନାଁ ଟିଏ। ରାଜ୍ୟ ଓ ରାଜ୍ୟ ବାହାରୁ ପ୍ରକାଶ ପାଇ ଆସୁଥିବା ବିଭିନ୍ନ ମୁଦ୍ରିତ ଏବଂ ସାମାଜିକ ଗଣମାଧ୍ୟମ ପତ୍ର-ପତ୍ରିକାରେ ତାଙ୍କର ବହୁ ଗଳ୍ପ-କବିତା ପ୍ରକାଶ ପାଇବା ସହ ପାଠକୀୟ ଆଦର ହାସଲ କରିଆସୁଛି। ସାହିତ୍ୟ ରଚନା ସହିତ ସାହିତ୍ୟ ସଂଗଠକ ଭାବରେ ବିଭିନ୍ନ ଅନୁଷ୍ଠାନ ସହିତ ସଂପୃକ୍ତ ରହି ଭାଷା ସାହିତ୍ୟର ବିକାଶ ନିମନ୍ତେ କାର୍ଯ୍ୟକରି ବେଶ୍ ପ୍ରଶଂସିତ।

"ଅର୍ଘ୍ୟ ଅର୍ପଣ" ହେଉଛି ତାଙ୍କର ପ୍ରଥମ ଭକ୍ତି ରସାତ୍ମକ କବିତା ସଂକଳନ। କାବ୍ୟମୋଦି ପାଠକଙ୍କ ନିକଟରେ ଏହା ଆଦୃତ ହୋଇ ପାରିବ ବୋଲି ଦୃଢ଼ ଆଶା।

- ପ୍ରକାଶକ



ପ୍ରକାଶକ :

ଚନ୍ଦ୍ରଶେଖରପୁର ସାହିତ୍ୟ ସଂସଦ